ଏସ,ୟୁ,ସ, ରାଜନୈତିକ ସମାଲୋଚନା ସିରିଜ—୨

# ବିଶ୍ୱ ରାଜନୀତି ଓ ନେହେରୁ ସରକାର

ଅଶ୍ୱିନୀ କୁମାର ଜେନା

ମୂଲ୍ୟ—୩୬ ନୂଆପଇସା

---

ସୋସିଆଲିଷ୍ଟ ଇଉନିଟି ସେଣ୍ଟର

# ସୂଚନା

ଦ୍ୱିତୀୟ ବିଶ୍ୱଯୁଦ୍ଧର ମନ୍ଥନ ଭିତରୁ ବର୍ବର ଫାସିଷ୍ଟ ଶକ୍ତିର ଧ୍ୱଂସ ସ୍ତୂପ ଉପରେ ସୃଷ୍ଟି ହେଲା ଷାଠିଏ କୋଟି ଜନତାର ନୂଆ ଚୀନ, ସ୍ୱାଧୀନ ଭିଏତନାମ ଓ ଉତ୍ତର କୋରିଆ, ପୂର୍ବ ଇଉରୋପର ବିଭିନ୍ନ ଦେଶରେ ଶ୍ରମିକ ଶ୍ରେଣୀର ଗଣତାନ୍ତ୍ରିକ ରାଷ୍ଟ୍ର ଏବଂ ଏସିଆ ଆଫ୍ରିକାର ସାମ୍ରାଜ୍ୟବାଦୀ ଉପନିବେଶମାନଙ୍କରେ ଉଠିଲା ମୁକ୍ତି ଆନ୍ଦୋଳନର ଜୁଆର । ସମାଜବାଦୀ ଶିବିର ପୂର୍ବାପେକ୍ଷା ଆହୁରି ସଂହତ ଓ ସଂଗଠିତ ହେଲା, ସୀମା ଆହୁରି ପ୍ରସାରିତ ହେଲା, ସାମ୍ରାଜ୍ୟବାଦୀ ଶୋଷଣ ଶୃଙ୍ଖଳରୁ ଅଧା ଦୁନିଆ ମୁକ୍ତ ହେଲା । ହିଟଲରର ମୁସୋଲିନିର ବିଜୟ ଦର୍ପ ଚୂର୍ଣ୍ଣ ହେଲା ସତ, କିନ୍ତୁ ଯେଉଁ ମୂଳରୁ ଏହି ଫାସିଷ୍ଟମାନଙ୍କର ଉତ୍ପତ୍ତି ସେହି ପୁଞ୍ଜିବାଦ ପୁଣି ଜୀଇ ରହିବାର ଅବକାଶ ପାଇଲା । ଶ୍ରମିକ ଶ୍ରେଣୀର ମୁକ୍ତି ଆନ୍ଦୋଳନକୁ ଦଳି ଯୁଦ୍ଧର ମନ୍ଥନଭିତରୁ ଏସିଆର କେତେକ କ୍ଷେତ୍ରରେ, ବିଶେଷ କରି ଭାରତବର୍ଷରେ ପୁଞ୍ଜିବାଦୀ ଶକ୍ତି, ନିରପେକ୍ଷତାର ଧ୍ୱଜା ତୋଳି ମୁଣ୍ଡ ଟେକିଲା ଏବଂ ସମସ୍ତ ପ୍ରକାର ବିରୋଧ ସତ୍ତ୍ୱେ ବିଶ୍ୱ ପୁଞ୍ଜିବାଦୀ ଶିବିରରେ ସାମିଲ ହେଲା । ଯୁଦ୍ଧୋତ୍ତର ବିଭିନ୍ନ ଦେଶର ଆଭ୍ୟନ୍ତରୀଣ ପରିସ୍ଥିତି, ପରସ୍ପର ବିରୋଧୀ ସ୍ୱାର୍ଥର ସଂଘର୍ଷ ଭିନ୍ନ ଭିନ୍ନ ରୂପରେ ଆତ୍ମ ପ୍ରକାଶ କରି ଆନ୍ତର୍ଜାତିକ ରାଜନୀତିରେ ଜଟିଳ ଗୋଲକଧନ୍ଦା ସୃଷ୍ଟି କଲା । "ସ୍ୱାଧୀନ ଦୁନିଆ" "ଶାନ୍ତି ଓ ଅହିଂସା" "ନିରପେକ୍ଷତା"ର ମୁଖା ତଳେ ଶରହତ ବ୍ୟାଘ୍ର ଭଳି ବିଶ୍ୱପୁଞ୍ଜିବାଦ ପୁଣି ଥରେ ନିଶ୍ୱାସ ମାରିବାର ସୁଯୋଗ ପାଇଲା । ଏଣୁ ସୃଷ୍ଟିର କାମ ସମ୍ପୂର୍ଣ୍ଣ ହୋଇ ପାରିନି ।

ନୂତନ ସୃଷ୍ଟିର ଯେତେ ସମ୍ଭାବନା ରହିଛି ତହିଁ ମଧ୍ୟରୁ ନୂତନ ଭାରତ ଅନ୍ୟତମ । ନୂତନ ଭାରତ ଏବେ ବି ସ୍ୱପ୍ନମଧ୍ୟରେ

ରହିଛି । ଏସିଆ ଆଫ୍ରିକାର ବହୁ ହତଭାଗ୍ୟ ଦେଶପରି ଭାରତୀୟ ଶ୍ରମିକଶ୍ରେଣୀର ବିପ୍ଳବୀ ଆନ୍ଦୋଳନ ଆଜି ଶ୍ୱାସରୁଦ୍ଧ, ପୁଞ୍ଜିବାଦୀଶୋଷଣ ତଳେ ନିଷ୍ପେଷିତ । ନେହେରୁ ସରକାରର ତଥାକଥିତ ଶାନ୍ତି, ନିରପେକ୍ଷ ବୈଦେଶିକ ନୀତି ଓ ଜାତୀୟ ସମାଜତନ୍ତ୍ରର ପରଦା ତଳେ ଭାରତୀୟ ଶିଶୁ ପୁଞ୍ଜିବାଦ ଆଜ ଶକ୍ତି ସଂଚୟ କରୁଛି ଏବଂ ଏସିଆ ଆଫ୍ରିକାର ବଜାର ଦଖଲ କରିବା ନିଶାରେ ବିହ୍ୱଳ ହୋଇ ଉଠିଛି । ଭାରତବର୍ଷର ତଥାକଥିତ ବିପ୍ଳବୀ ଦଳଗୁଡିକ ବିଖ୍ୟାତ ଶାନ୍ତିବାଦୀ[?] ନେହେରୁଙ୍କ ସ୍ତୁତି ଗାନରେ ପାଗଳ, "ନିରପେକ୍ଷତା"ର କାରାଗାରରେ ସେମାନେ ଆଜି ଅବରୁଦ୍ଧ । ନେହେରୁ ସରକାରର ଶାନ୍ତିପୂର୍ଣ୍ଣ ନିରପେକ୍ଷ (?) ବୈଦେଶିକ ନୀତି ଭାରତୀୟ ଶ୍ରମିକ ଆନ୍ଦୋଳନକୁ ଯେପରି ମାରାତ୍ମକ ଭୁଲ ପଥରେ ଠେଲିନେବାର ଉପକ୍ରମ କରିଛି, କିଏ କହିବ ସେହି ଭୁଲ ସୁଧାରିବାକୁ ଯାଇ ଶ୍ରମିକ ଶ୍ରେଣୀ ଅଜସ୍ର ରକ୍ତପାତ ନ କରିବ !

ଭାରତର ପୁଞ୍ଜିବାଦୀ ରାଷ୍ଟ୍ର ଓ ସମାଜ ବ୍ୟବସ୍ଥାର ଧ୍ୱଂସ ଉପରେ ଶ୍ରମିକ ଶ୍ରେଣୀର ମୁକ୍ତି ଆସିବ—ନେହେରୁ ସରକାରର ପ୍ରଶସ୍ତି ଗାନ ଉପରେ ନିର୍ଭର କରି ନୁହେଁ, ବରଂ ସେହି ସରକାରର ଆଦର୍ଶଗତ ଓ ସାଂଗଠନିକ ପ୍ରଭାବରୁ ଜନସାଧାରଣଙ୍କୁ ମୁକ୍ତ କରି । ଶ୍ରମିକର ବିପ୍ଳବୀ ସ୍ୱାର୍ଥ ଦୃଷ୍ଟିରୁ ଛଦ୍ମବେଶୀ ନେହେରୁ ସରକାରର "ଶାନ୍ତି ଓ ନିରପେକ୍ଷତା"ର ଅସଲ ଚେହେରା ଉଦ୍‌ଘାଟନ କରିବା ସଙ୍ଗେ ସଙ୍ଗେ ବିପ୍ଳବୀ ଆଦର୍ଶକୁ ସଠିକ ଭାବେ ତୋଳି ଧରିବାକୁ ହେବ । ସମସ୍ତ ପ୍ରକାର ବିଚ୍ୟୁତି, ଦୋଦୁଲ୍ୟମାନତା ବିରୁଦ୍ଧରେ ଆଦର୍ଶଗତ ସଂଗ୍ରାମର ହତିଆରକୁ ଶାଣିତ କରିବାକୁ ହେବ । ଏ ସାଧନା ଯେତେ କଠୋର ହେଉ ପଛେ. ପଥ ଯେତେ ଦୁର୍ଗମ ହେଉ ପଛେ, ଆଗାମୀ ଜଟିଳ ସଂଘର୍ଷ ଭିତରୁ ନୂତନ ଭାରତ ସୃଷ୍ଟି କରିବାକୁ ହେବ । —**ଲେଖକ**

# ବୈଦେଶକ ନୀତି ବିଚାରର ଭିତ୍ତି

କୌଣସି ରାଷ୍ଟ୍ରର ବୈଦେଶିକ ନୀତି କହିଲେ ନିଶ୍ଚିତ ଭାବେ ବୁଝିବାକୁ ହେବ ଯେ ସେହି ରାଷ୍ଟ୍ରର ଘରୋଇ ନୀତିର ପ୍ରତି-ଫଳନ ବା ପ୍ରତିଛବି । ଅର୍ଥାତ୍ — ଘରୋଇ ନୀତି କାୟା ହେଲେ ବୈଦେଶିକ ନୀତି ତାହାର ଛାୟା । ଯେ କୌଣସି ରାଷ୍ଟ୍ରର ଏହି ଦୁଇଟି ନୀତି ପରସ୍ପର ଘନିଷ୍ଠ ଭାବେ ଜଡ଼ିତ । ପ୍ରତ୍ୟେକ ରାଷ୍ଟ୍ର ନିଜ ଦେଶର ସାମାଜିକ ଓ ଅର୍ଥନୈତିକ ବ୍ୟବସ୍ଥାକୁ ସୁ ସଂଗଠିତ ଓ ଶକ୍ତିଶାଳୀ କରିବା ଉଦ୍ଦେଶ୍ୟରେ ନିର୍ଦ୍ଦିଷ୍ଟ ଯୋଜନା ଓ ନୀତି ଗ୍ରହଣ କରିଥାଏ । ବୈଦେଶିକ ନୀତି ହେଉଛି ଉକ୍ତ ଉଦ୍ଦେଶ୍ୟକୁ ସାଧନ କରିବା ଦିଗରେ ଏକ ପନ୍ଥା । ପ୍ରତ୍ୟେକ ରାଷ୍ଟ୍ର ନିଜ ଦେଶର ସ୍ୱତନ୍ତ୍ର ଆଭ୍ୟନ୍ତରୀଣ ସମସ୍ୟା ସମାଧାନ କରିବାର ମୂଳ ଉଦ୍ଦେଶ୍ୟ ରଖି ପ୍ରତ୍ୟେକ ଆନ୍ତର୍ଜାତିକ ଘଟଣା ଓ ସମସ୍ୟାରେ ସଂପୃକ୍ତ ରହିବାକୁ ଏବଂ ଅନ୍ୟାନ୍ୟ ରାଷ୍ଟ୍ର ସହ ସଂପର୍କ ପ୍ରତିଷ୍ଠା କରିବାକୁ ବାଧ୍ୟ ହୁଅନ୍ତି, ଏବଂ କିଭଳି ଆନ୍ତର୍ଜାତିକ ପରିସ୍ଥିତିରେ କିଭଳି ବୈଦେଶିକ ନୀତି ଗ୍ରହଣ କଲେ ସ୍ୱତନ୍ତ୍ର ଆଭ୍ୟନ୍ତରୀଣ ସମସ୍ୟା-ଗୁଡ଼ିକର ସମାଧାନ ହୋଇ ପାରିବ ତାହା ବିବେଚନା କରି ବୈଦେଶିକ ନୀତି ନିର୍ଦ୍ଧାରଣ କରନ୍ତି । ଏହି ମୂଳ ଉଦ୍ଦେଶ୍ୟ ବିନା ବୈଦେଶିକ ନୀତି ଅର୍ଥଶୂନ୍ୟ । ଏଣୁ କୌଣସି ରାଷ୍ଟ୍ରର ବୈଦେଶିକ ନୀତିର ସ୍ୱରୂପ ଜାଣିବାକୁ ହେଲେ, ସେହି ରାଷ୍ଟ୍ରର ସାମାଜିକ, ଅର୍ଥନୈତିକ ବ୍ୟବସ୍ଥା ଓ ସମସ୍ୟାମାନ ଜାଣିବା ଯେପରି ଦରକାର, ସେହିପରି ଦୁନିଆର ସମସାମୟିକ ରାଜନୈତିକ ପରିସ୍ଥିତି ମଧ୍ୟ ଜାଣିବା ଦରକାର ।

ଭାରତବର୍ଷର ବୈଦେଶିକ ନୀତିର ସ୍ୱରୂପ ନିର୍ଦ୍ଧାରଣ କ୍ଷେତ୍ରରେ ଉପରୋକ୍ତ ବକ୍ତବ୍ୟ ପ୍ରଯୁଜ୍ୟ । ଭାରତର ସାମାଜିକ ଅର୍ଥନୈତିକ ବ୍ୟବସ୍ଥା ଓ ସମସ୍ୟାମାନ କ'ଣ, ବର୍ତ୍ତମାନ ଆନ୍ତର୍ଜାତିକ ପରିସ୍ଥିତି କ'ଣ ଏବଂ ଏହି ସମସ୍ୟାଗୁଡ଼ିକର ସମାଧାନ କରିବା ଦିଗରେ ଆନ୍ତର୍ଜାତିକ ପରିସ୍ଥିତି କି ପ୍ରକାର ପ୍ରଭାବ ବିସ୍ତାର କରିଛି —ତାହାହିଁ ଆଲୋଚନାର ମୁଖ୍ୟ ବସ୍ତୁ ।

## ଦୁଇ ଶିବିର

ଦ୍ୱିତୀୟ ମହାଯୁଦ୍ଧର ପରବର୍ତ୍ତୀ ପ୍ରଧାନ ଐତିହାସିକ ଘଟଣା ହେଉଛି ସମାଜବାଦୀ ଶିବିରର ଅଭ୍ୟୁଦୟ । ଯୁଦ୍ଧ ପୂର୍ବରୁ ଯେଉଁ ସମାଜବାଦ କେବଳ ଗୋଟିଏ ଦେଶରେ ସୀମାବଦ୍ଧ ଥିଲା, ଆଜି ତାହା ଦୁନିଆର ଅର୍ଦ୍ଧେକ ଅଂଶରେ ପ୍ରସାରିତ ହୋଇଛି ଏବଂ ବିଶ୍ୱ ସମାଜବାଦରେ ରୂପାନ୍ତରିତ ହୋଇଛି । ବିଶ୍ୱ ପୁଞ୍ଜିବାଦର ପରିସର ସଂକୁଚିତ ହୋଇଛି ଏବଂ କ୍ରମେ ତାହା ମୃତ୍ୟୁ ପଥରେ ଗତି କରୁଛି । ଏହି ଦୁଇ ପରସ୍ପର ବିରୋଧୀ ଶିବିର—ପୁଞ୍ଜିବାଦ ଓ ସମାଜବାଦ—ନିଜ ନିଜର ରାଜନୈତିକ ଓ ଅର୍ଥନୈତିକ ନିୟମ ଅନୁଯାୟୀ ଅଗ୍ରସର ହେଉଛନ୍ତି ।

ମାର୍କିନ ଯୁକ୍ତରାଷ୍ଟ୍ର ନେତୃତ୍ୱରେ ବ୍ରିଟେନ, ଫ୍ରାନ୍ସ, ଏବଂ ସମସ୍ତ ପୁଞ୍ଜିବାଦୀ, ସାମନ୍ତବାଦୀ, ଔପନିବେଶିକ ଓ ଅର୍ଦ୍ଧ ଔପନିବେଶିକ ରାଷ୍ଟ୍ରକୁ ନେଇ ପ୍ରଥମ ଶିବିର ଗଠିତ । ସୋଭିଏତ ଇଉନିୟନ ନେତୃତ୍ୱରେ ନୂଆ ଚୀନ, ପୂର୍ବ ଇଉରୋପ ଓ ପୂର୍ବ ଜର୍ମାନୀ ଏବଂ ଦୁନିଆର ପ୍ରତ୍ୟେକ ଦେଶରେ ମୁକ୍ତିକାମୀ ଜନସାଧାରଣଙ୍କୁ ନେଇ ଅପର ଶିବିର ଗଠିତ । ପ୍ରଥମ ଶିବିରର ଉଦ୍ଦେଶ୍ୟ ହେଉଛି—

ଏକଗୁଟିଆ ପୁଞ୍ଜିବାଦୀ ଓ ଔପନିବେଶିକ ଶୋଷଣକୁ ବଜାୟ ରଖିବା, ଦୁନିଆର ମୁକ୍ତିକାମୀ ଜନସାଧାରଣଙ୍କର ସ୍ୱାଧୀନତା ଓ ଆନ୍ଦୋଳନକୁ ଦମନକରିବା, ଶୋଷିତ ଶ୍ରେଣୀର ଆଶା ଓ ଭରସାର ସ୍ଥଳ ସୋଭିଏତ ଓ ଚୀନକୁ ଧ୍ୱଂସ କରିବା ଉଦ୍ଦେଶ୍ୟରେ ନୂତନ ନୂତନ ମାରଣାସ୍ତ୍ର ଉଦ୍‌ଭାବନ କରିବା ଏବଂ ସାରା ପୃଥିବୀକୁ ଆଉ ଏକ ପ୍ରଳୟଙ୍କରୀ ବିଶ୍ୱଯୁଦ୍ଧ ମୁହଁକୁ ଠେଲି ଦେବା । ସେଥିପାଇଁ ଇଙ୍ଗ୍-ମାର୍କିନ ଯୁଦ୍ଧଖୋର ଗୋଷ୍ଠୀ ପୃଥିବୀର ପ୍ରତ୍ୟେକ ଧନତାନ୍ତ୍ରିକ ଦେଶକୁ ନେଇ ମିଳିତ ଯୁଦ୍ଧମେଣ୍ଟ ଗଢ଼ିବା ଏବଂ ସୁଯୋଗ ଦେଖି ଅନ୍ୟାନ୍ୟ ଦୁର୍ବଳ ଧନତାନ୍ତ୍ରିକ ଓ ଔପନିବେଶିକ ରାଷ୍ଟ୍ରକୁ ଏହି ଯୁଦ୍ଧ ମେଣ୍ଟ ଭିତରକୁ ଟାଣି ଆଣିବା ପାଇଁ ପ୍ରବଳ ଉଦ୍ୟମ କରୁଛନ୍ତି । ଏହାର କାରଣ ଅତି ସ୍ପଷ୍ଟ । ଦ୍ୱିତୀୟ ବିଶ୍ୱଯୁଦ୍ଧ ପୂର୍ବରୁ ଆନ୍ତର୍ଜାତିକ ବଜାରରେ ସାମ୍ରାଜ୍ୟବାଦୀମାନଙ୍କର ଯେଉଁ ଏକଗୁଟିଆ କର୍ତ୍ତୃତ୍ୱ ଥିଲା, ଯୁଦ୍ଧପରେ ତାହା ଲୋପ ପାଇଛି । ପୁଞ୍ଜିବାଦୀ ବଜାର ପାଖ ଚାଲି ଦେଇ ଗଢ଼ି ଉଠିଛି ସମାଜବାଦୀ ବଜାର । ପୁଞ୍ଜିବାଦୀ ବଜାର ସଙ୍କୁଚିତ ହେବା ଫଳରେ ପୁଞ୍ଜିପତିମାନଙ୍କର ସାରା ଦୁନିଆବ୍ୟାପୀ ମୁନାଫା ଲୁଣ୍ଠନ କରିବାର ଅବାଧ ସ୍ୱାଧୀନତା ଆଜି ସୀମାବଦ୍ଧ । ଏ ସ୍ୱାଧୀନତା ଯେତିକି ସୀମାବଦ୍ଧ ହେଉଛି, ମୁନାଫାର ଭାଗବଣ୍ଟା ନେଇ ଏମାନଙ୍କ ମଧ୍ୟରେ ପ୍ରତି-ଯୋଗିତା ଓ ଅନ୍ତର୍ବିରୋଧ ସେତିକି ପ୍ରବଳ ହେଉଛି, ସେତିକି ଅର୍ଥନୈତିକ ସଙ୍କଟର ସମ୍ମୁଖୀନ ହେଉଛନ୍ତି ଏବଂ ପୁଞ୍ଜିବାଦୀ ମେଣ୍ଟ ସେହି ଅନୁପାତରେ ଦୁର୍ବଳ ହେଉଛି । ଅନ୍ୟ ଦିଗରେ ସମାଜବାଦୀ ବଜାର ପରସ୍ପର ସହଯୋଗିତା ଓ ସମୃଦ୍ଧି ଉପରେ ପ୍ରତିଷ୍ଠିତ ଥିବା ହେତୁ ଅଗ୍ରଗତି କରିଚାଲିଛି । ଏ ବଜାର ଯେତିକି ପ୍ରସାରିତ ହେଉଛି, ବିଶ୍ୱ ପୁଞ୍ଜିବାଦର ସଙ୍କଟ ସେତିକି ତୀବ୍ର ହେଉଛି । ଏହି

ଆସନ୍ନ ମୃତ୍ୟୁମୁଖରୁ ବଂଚି ରହିବାପାଇଁ ଆଜି ବିଶ୍ୱପୁଞ୍ଜିବାଦ ସମାଜ ତାନ୍ତ୍ରିକ ଶିବିର ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିବାକୁ ବ୍ୟଗ୍ର ହୋଇ ଉଠିଛନ୍ତି ।

ସମାଜବାଦୀ ଶିବିରର ଉଦ୍ଦେଶ୍ୟ ହେଉଛି—ଦୁନିଆରେ ଶାନ୍ତିପ୍ରତିଷ୍ଠା କରିବା ଏବଂ ପରସ୍ପର ସହଯୋଗିତା, ପ୍ରୀତି, ବନ୍ଧୁତ୍ୱ ଭିତ୍ତିରେ ଉତ୍ତରୋତ୍ତର ଉନ୍ନତି ପଥରେ ଅଗ୍ରସର ହେବା । ସମାଜତାନ୍ତ୍ରିକ ଅର୍ଥନୀତିରେ "ବ୍ୟକ୍ତିଗତ ମୁନାଫା" ଉତ୍ପାଦନର ମୌଳିକ ଉଦ୍ଦେଶ୍ୟ ନୁହେଁ । ପୁଞ୍ଜିବାଦୀ ଅର୍ଥନୀତି ଭଳି ସମାଜ ତାନ୍ତ୍ରିକ ଅର୍ଥନୀତିରେ ଅରାଜକତା ଦେଖାଦିଏନା କିମ୍ବା ବିଦେଶର ବଜାର ଦଖଲ କରିବାର ପ୍ରଶ୍ନ ଉଠେନା । ଏହି କାରଣରୁ ସମାଜ ତାନ୍ତ୍ରିକ ଅର୍ଥନୀତି ସମସ୍ତପ୍ରକାର ସଂକଟର ଊର୍ଦ୍ଧ୍ୱରେ ଅବସ୍ଥିତ, ଏବଂ ତା ପାଇଁ ବିକାଶର ପଥ ସଦାସର୍ବଦା ଉନ୍ମୁକ୍ତ । ଏଠାରେ ମଣିଷର ଚାହିଦା ଅନୁଯାୟୀ ଉତ୍ପାଦନ ହୁଏ । ଯୁଦ୍ଧ ହେଲେ ସମାଜ-ତାନ୍ତ୍ରିକ ଅର୍ଥନୀତିର ବିକାଶ ପଥରେ ବାଧା ସୃଷ୍ଟି ହୁଏ ଏବଂ ଆବଶ୍ୟକତା ଅନୁଯାୟୀ ଜିନିଷପତ୍ରର ଉତ୍ପାଦନ ହୋଇପାରେନାହିଁ । ଏଣୁ ସମାଜତାନ୍ତ୍ରିକ ଶିବିର ଚାହେଁ ଦୁନିଆରେ ସ୍ଥାୟୀ ଶାନ୍ତି । କିନ୍ତୁ ପୁଞ୍ଜିବାଦୀ ଶିବିର ଆସନ୍ନ ଅର୍ଥନୈତିକ ସଂକଟରୁ ରକ୍ଷା ପାଇବା ପାଇଁ ଆଉ ଏକ ବିଶ୍ୱଯୁଦ୍ଧ ସୃଷ୍ଟି କରିବାରେ ଚେଷ୍ଟିତ । ପୁଞ୍ଜିପତି ଶ୍ରେଣୀ ନିଜ ନିଜର ଦେଶରେ ସଂଗ୍ରାମୀ ଗଣଆନ୍ଦୋଳନକୁ ଦମନ କରି ଜାତୀୟ ଅର୍ଥନୀତିକୁ ଯେପରି ସାମରିକ ଅର୍ଥନୀତିରେ ପରିଣତ କରୁଛନ୍ତି ଏବଂ ମଣିଷର ନିତ୍ୟ ବ୍ୟବହାର୍ଯ୍ୟ ଜିନିଷପତ୍ରର ଉତ୍ପାଦନ ପରିବର୍ତ୍ତେ ଯୁଦ୍ଧସରଞ୍ଜାମ ତିଆରି କରିବାରେ ଲାଗିଛନ୍ତି, ସେହିପରି ଅନ୍ୟାନ୍ୟ ଦେଶର ଗଣ-ଆନ୍ଦୋଳନକୁ ଦମନ କରି ଯୁଦ୍ଧ ଉନ୍ମାଦନା ସୃଷ୍ଟି କରିବା ଏବଂ ମଣିଷ ସମାଜକୁ ଆଉ ଏକ ଯୁଦ୍ଧନିଆରେ

ନାଶକ୍ଷପ କରିବାର ଷଡ଼ଯନ୍ତ୍ର କରୁଛନ୍ତି । କିନ୍ତୁ ସମାଜବାଦୀ ଶିବିର ଏହି ଯୁଦ୍ଧ ଉନ୍ମାଦନାର ତୀବ୍ର ବିରୋଧ କରୁଛି ଏବଂ ମନିଷ, ସମାଜକୁ ଆସନ୍ନ ଯୁଦ୍ଧ ମୁହଁରୁ ରକ୍ଷା କରିବା ପାଇଁ ଏବଂ ଅନ୍ୟ ଦିଗରେ ବିଶ୍ୱ ପୁଞ୍ଜିବାଦର ଅବସାନ ପାଇଁ ସାରା ଦୁନିଆରେ ସ୍ଥାୟୀ ଶାନ୍ତି ପ୍ରତିଷ୍ଠାର ପଥକୁ ସୁଗମ କରୁଛି, ଏବଂ ଦୁନିଆର ସମସ୍ତ ପ୍ରଗତିଶୀଳ, ଶାନ୍ତିକାମୀ ଜନସାଧାରଣଙ୍କୁ ଏକତ୍ର କରି ଶାନ୍ତି ଆନ୍ଦୋଳନକୁ ବ୍ୟାପକ ଓ ବଳିଷ୍ଠ କରୁଛି । କେବଳ ସେତିକି ନୁହେଁ, ଯୁଦ୍ଧର ପରିସରକୁ ଆହୁରି ସଙ୍କୁଚିତ କରି ଶାନ୍ତିଆନ୍ଦୋଳନକୁ ସବଳ ବ୍ୟାପ୍ତକରିବାପାଇଁ ପ୍ରତ୍ୟେକ ପୁଞ୍ଜିବାଦୀ ଦେଶ ସହ ଖୋଲା ବାଣିଜ୍ୟ ସଂପର୍କ ସ୍ଥାପନ କରିବା, ସମସ୍ତ ପ୍ରକାର ମାରଣାସ୍ତ୍ର ଉତ୍ପାଦନ ଓ ସାମରିକ ଚୁକ୍ତି ବିରୁଦ୍ଧରେ ସେମାନଙ୍କ ପ୍ରସ୍ତାବ ଏବଂ ଏକ ଜାତି କର୍ତ୍ତୃକ ଅପର ଜାତିର ସ୍ୱାଧୀନତା ଉପରେ ହସ୍ତକ୍ଷେପ ବିରୁଦ୍ଧରେ ତୀବ୍ର ପ୍ରତିବାଦ ଦ୍ୱାରା ଶାନ୍ତିପ୍ରତିଷ୍ଠାପାଇଁ ସମାଜବାଦୀ ଶିବିରର ସହୃଦୀୟ ମନୋଭାବ ଓ ଆନ୍ତରିକ ପ୍ରଚେଷ୍ଟାର ପ୍ରକୃତ ନିଦର୍ଶନ ମିଳେ ।

## ପୁଞ୍ଜିବାଦୀ ଯୁଦ୍ଧ ଶିବିରରେ ଅର୍ଥନୈତିକ ସଂକଟ ଓ ତୀବ୍ର ସ୍ୱାର୍ଥ ସଂଘର୍ଷ

ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ପୁଞ୍ଜିବାଦୀ ଶିବିରରେ ବଜାର ଯେଉଁ ମହା ଭାଲେଣି ପଡ଼ିଛି । ଜନସାଧାରଣଙ୍କ କ୍ରୟକ୍ଷମତା କ୍ରମାଗତ ହ୍ରାସ ହେତୁ ନିଜ ଦେଶରେ ଉତ୍ପାଦିତ ଜିନିଷ ପତ୍ର ବିକ୍ରୟ ପାଇଁ ବଜାର ନାହିଁ । ଅପରନ୍ତୁ ବିଦେଶରେ ଯେଉଁସବୁ ଉପନିବେଶ ଥିଲା, ସେଗୁଡ଼ିକ ଗୋଟିକ ପରେ ଗୋଟିଏ ଖସି ଯାଉଛନ୍ତି । ସାରା ଦୁନିଆକୁ ନିଜ ମଧ୍ୟରେ ଭାଗବାଣ୍ଟିବାପାଇଁ ସାମ୍ରାଜ୍ୟବାଦୀମାନେ

ଯେତେ ଥର ଯୁଦ୍ଧ ଭିଆଇଛନ୍ତି ସେତେଥର କ୍ଷତବିକ୍ଷତ ହୋଇଛନ୍ତି । ଦ୍ୱିତୀୟ ମହାଯୁଦ୍ଧ ଏହି କ୍ଷତକୁ ଆହୁରି ଗଭୀରତର କରିଛି, ସେମାନଙ୍କର ମୃତ୍ୟୁ ଦିବସକୁ ଆହୁରି ତ୍ୱରାନ୍ୱିତ କରିଛି । ଏସିଆ ଭୂଖଣ୍ଡରୁ ଚୀନ ଭଳି ବିରାଟ ଦେଶ ମୁକ୍ତ ହେଲା, ଭିଏତନାମ, ଉତ୍ତର କୋରିଆ ମୁକ୍ତ ହେଲା, ପୂର୍ବ ଇଉରୋପରେ ପୋଲାଣ୍ଡ, ବୁଲଗେରିଆ, ରୁମାନିଆ, ଚେକୋସ୍ଲୋଭାକିଆ, ଆଲବେନିଆ, ହଙ୍ଗେରି ଆଦି ବହୁ ଦେଶରେ ଶ୍ରମିକ ଶ୍ରେଣୀର ଗଣତାନ୍ତ୍ରିକ ବିଜୟ ହାସଲ ହେଲା; ସାମ୍ରାଜ୍ୟବାଦୀ ଶୃଙ୍ଖଳ ଛିନ୍ନ କରି ଏସିଆ ଆଫ୍ରିକାର କେତେକ ଦେଶରେ, ଯଥା—ଭାରତ, ବର୍ମା, ଇଣ୍ଡୋନେସିଆ, ସିଲୋନ, ଇଜିପ୍ଟ, ସୁଦାନ ପ୍ରଭୃତିରେ ଜାତୀୟ ସରକାର ଗଠିତ ହେଲା । ଏହା ବ୍ୟତୀତ ଏସିଆ, ଆଫ୍ରିକା ଓ ଲାଟିନ ଆମେରିକାର ବହୁ କଲୋନୀରେ ମୁକ୍ତି ଆନ୍ଦୋଳନ ଏବେ ବି ଜୀବିତ ରହିଛି । କହିବାକୁ ଗଲେ ଦୁନିଆର ଅର୍ଦ୍ଧେକ ଅଂଚଳ ସାମ୍ରାଜ୍ୟବାଦୀଙ୍କ ହାତମୁଠାରୁ ଖସିଗଲେ । ଫଳତଃ ଅବଶିଷ୍ଟ ଖଣ୍ଡିତ ବଜାରରେ ଶ୍ୱାନ ଶୃଗାଳ ପରି ଝଣାଝଣି ହେବା ବ୍ୟତୀତ ଏମାନଙ୍କର ଅନ୍ୟ ପନ୍ଥା ନାହିଁ । 'ଜ୍ୱଳନ୍ତ-ଅଗ୍ନିରେ ଘୃତାହୁତି' ଭଳି ସମ୍ପ୍ରତି ସ୍ୱାଧୀନ ହୋଇଥିବା ଏସିଆ ଆଫ୍ରିକାର ପୁଞ୍ଜିବାଦୀ ଦେଶମାନେ ଏହି ଖଣ୍ଡିତ ବଜାରରେ ଏକାଠି ହୋଇ ସଂକଟକୁ ଆହୁରି ଘନୀଭୂତ କରିଛନ୍ତି । ବଜାର ନେଇ ଏମାନଙ୍କ ମଧ୍ୟରେ ଦ୍ୱନ୍ଦ୍ୱ ଦେଖା ଦେଇଛି ।

ଦ୍ୱିତୀୟ ବିଶ୍ୱଯୁଦ୍ଧର ରାଜନୈତିକ ଓ ଅର୍ଥନୈତିକ ପ୍ରଭାବ ସବୁ ପୁଞ୍ଜିବାଦୀ ଦେଶର ଆଭ୍ୟନ୍ତରୀଣ ପରିସ୍ଥିତିରେ ସମାନଭାବରେ ପ୍ରତିଫଳିତ ହୋଇନାହିଁ । କାହାର ପୁଷମାସ, କାହାର ସର୍ବନାଶ । ଯୁଦ୍ଧ ଭିତରେ ଆମେରିକା ଚଡ଼ା ଦରରେ ବ୍ୟବସାୟ କରି

ମିଳିତ୍ୱାରା ମାଲ ସାମଗ୍ରୀ ଯୋଗାଣ କରି ଅଜସ୍ର ମୁନାଫା ଲୁଣ୍ଠନ କରିଥିଲା, ଏବଂ ନିଜର ଅର୍ଥନୈତିକ ବ୍ୟବସ୍ଥାକୁ ସୁଦୃଢ କରିଥିଲା । କିନ୍ତୁ ବ୍ରିଟେନ ଓ ଫ୍ରାନ୍ସ ପ୍ରଭୃତି କେତେକ ଇଉରୋପୀୟ ଦେଶ ଋଣଭାରାକ୍ରାନ୍ତ ହୋଇଥିଲେ, ଏବଂ ଆମେରିକାର ଶରଣାପନ୍ନ ହେବା ବ୍ୟତୀତ ସେମାନଙ୍କର ଗତ୍ୟନ୍ତର ନଥିଲା । ଯୁଦ୍ଧ ପୂର୍ବରୁ ଯେଉଁ ବ୍ରିଟେନ ପ୍ରଥମ ଶକ୍ତି ରୂପେ ପରିଚିତ ଥିଲା, ସେ ଆଜି ତୃତୀୟ ଶକ୍ତିରେ ପରିଣତ ହୋଇଛି, ଏବଂ ଭିକ୍ଷା ଝୁଲି ଧରି ଆମେରିକାର ଦ୍ୱାରସ୍ଥ ହେବାକୁ ବାଧ୍ୟ ହୋଇଛି ।

ମଜା କଥା ହେଉଛି ଯେ, ମାର୍କିନ ପୁଞ୍ଜିଗୋଷ୍ଠୀ ବନ୍ଧୁଙ୍କୁ ସାହାଯ୍ୟ ଦେବା ବାହାନାରେ ବ୍ରିଟେନ ଓ ଫ୍ରାନ୍ସର ଜାତୀୟ ଅର୍ଥନୀତିରେ ପ୍ରବେଶ କରି ତାକୁ କବଳିତ କରିବା ପାଇଁ ଚେଷ୍ଟା କରୁଛି ଏବଂ ଏମାନଙ୍କର କଲୋନୀଗୁଡ଼ିକୁ ଗୋଟିଏ ପରେ ଗୋଟିଏ ଦଖଲ କରିବାରେ ଲାଗିଛି । ଫ୍ରାନ୍ସର ଦକ୍ଷିଣ ଭିଏତନାମ ଆଜି ଆମେରିକା ହାତରେ । ବ୍ରିଟେନର କାନାଡ଼ା, ଅଷ୍ଟ୍ରେଲିଆ, ନିଉଜିଲାଣ୍ଡ ଓ ଲାଟିନ ଆମେରିକାର କଲୋନୀଗୁଡ଼ିକୁ ଯୁକ୍ତରାଷ୍ଟ୍ର ଗ୍ରାସ କରିବାରେ ଲାଗିଛି ତୈଳ ସଂପଦ ଭରା ଆରବ ଅଂଚଳରୁ ବ୍ରିଟେନର ପ୍ରଭାବ ଧୀରେ ଧୀରେ ଲୋପ ପାଉଛି ଏବଂ ମାର୍କିନ ପୁଞ୍ଜିର ଆଧିପତ୍ୟ ବିସ୍ତୃତି ଲାଭ କରୁଛି । କେବଳ ସେତିକି ନୁହେଁ, ଔପନିବେଶିକ ମୁକ୍ତି ଆନ୍ଦୋଳନକୁ ଦମନ କରି 'ଇଉରୋପୀୟ ବନ୍ଧୁମାନଙ୍କୁ' ରକ୍ଷା କରିବାକୁ ଯାଇଁ ମାର୍କିନ ସାମ୍ରାଜ୍ୟବାଦ 'ବନ୍ଧୁମାନଙ୍କ' ପ୍ରତି ବିଶ୍ୱାସ-ଘାତକତା କରିନାହିଁ, ସେମାନଙ୍କ କଲୋନୀରେ ଯୁଦ୍ଧ ଘାଟିମାନ ସ୍ଥାପନ କରିଛି । ମାଳୟର ମୁକ୍ତି ଆନ୍ଦୋଳନକୁ ଦମନ କରିବା ଦିଗରେ ବ୍ରିଟେନକୁ ସାମରିକ ଓ ଆର୍ଥିକ ସାହାଯ୍ୟ ଦେବାକୁ ଯାଇ ମାର୍କିନ ସାମ୍ରାଜ୍ୟବାଦୀ ଗୋଷ୍ଠୀ ସେଠାରେ ରବର ଓ ଟିଣ

ବ୍ୟବସାୟ ଉପରେ ନିଜର ଏକଚାଟିଆ କର୍ତ୍ତୃତ୍ୱ ଜାରି କରିଛି । ଏହା ଫଳରେ ୧୪୭୭ଟି ଦେଶୀ ଓ ବିଦେଶୀ କଂପାନୀ ଦେବାଳିଆ ହୋଇ ଯାଇଛି । ବ୍ରିଟିଶ ଗାଏନାରେ ଗଢି ଉଠିଥିବା ମାର୍କିନ ସାମରିକ ଘାଟି ଏବଂ ବକ୍ସାଇଟ୍ ଖଣିଜ ବ୍ୟବସାୟକୁ ପୁରାପୁରି କବଳିତ କରିଛି । ସେହିପରି ମରକ୍କୋକୁ କେବଳ ଫରାସୀ ସାମ୍ରାଜ୍ୟବାଦ ଲୁଣ୍ଠନ କରିନାହିଁ, ମାର୍କିନ ପ୍ରଭୁଙ୍କ ସନ୍ତୋଷ-ବିଧାନ ପାଇଁ ୧୭୦୦ ହେକ୍ଟର ଜମିରେ ସାମରିକ ବିମାନ ଘାଟି ନିର୍ମାଣ କରାଯାଇଛି ଏବଂ ଦସ୍ତା, ଟିଣ ପ୍ରଭୃତି ଖଣିଜ ଦ୍ରବ୍ୟ ଉପରେ ମାର୍କିନ ପୁଞ୍ଜିର ଅପ୍ରତିହତ ପ୍ରତିପତ୍ତି ଜାରି ହୋଇଛି । ବନ୍ଧୁବରଙ୍କ କାର୍ଯ୍ୟକଳାପ ଏତିକିରେ ଶେଷ ନୁହେଁ—ଗୋଟିଏ ଢେଲାରେ ଦୁଇଟି ପକ୍ଷୀ ଶିକାର କରିବାର ଉଦ୍ଦେଶ୍ୟ ରହିଛି । ସମାଜବାଦୀ ଶିବିରକୁ ଅର୍ଥନୈତିକ ବାସନ୍ଦ କରିବା ଉଦ୍ଦେଶ୍ୟରେ ସୋଭିଏତ ଋଷ, ଚୀନ ଓ ଅନ୍ୟାନ୍ୟ ନୂଆ ଗଣତାନ୍ତ୍ରିକ ଦେଶ ସହ ବାଣିଜ୍ୟ ସମ୍ପର୍କ ନ ରଖିବା ପାଇଁ ବ୍ରିଟେନ, ଫ୍ରାନ୍ସ ଓ ଅନ୍ୟାନ୍ୟ ପୁଞ୍ଜିବାଦୀ ଦେଶ ଉପରେ ଆମେରିକା ପ୍ରବଳ ଚାପ ଦେଉଛି ଏବଂ ଅନ୍ୟ ଦିଗରେ ତୀବ୍ର ପ୍ରତିଯୋଗିତା ମାଧ୍ୟମରେ ଏମାନଙ୍କୁ ଆନ୍ତର୍ଜାତିକ ବଜାରରୁ ବହିଷ୍କାର କରି ମାର୍କିନ ପୁଞ୍ଜିର ଦାସତ୍ୱ ସ୍ୱୀକାର କରିବା ପାଇଁ ବାଧ୍ୟ କରାଯାଉଛି । ମାର୍କିନ ସାମ୍ରାଜ୍ୟବାଦୀମାନେ ଏହି ଧାରଣା ପୋଷଣ କରୁଛନ୍ତି ଯେ ଅର୍ଥନୈତିକ ବାସନ୍ଦ ଦ୍ୱାରା ସମାଜ-ବାଦୀ ଶିବିର ଧ୍ୱଂସ ପାଇଯିବ ଏବଂ ସାରା ଦୁନିଆରେ ନିଜର କର୍ତ୍ତୃତ୍ୱ କାଏମ ହେବ । କିନ୍ତୁ ଏହା ଯେ ଗୋଟାଏ ଉଦ୍ଭଟ ଧାରଣା, ଏହା ପ୍ରମାଣିତ ହୋଇ ଯାଇଛି । ବରଂ ଏହାର ପରିଣାମ ସ୍ୱରୂପ ସାମ୍ରାଜ୍ୟବାଦୀମାନେ ନିଜର କବର ଖୋଳା କାମକୁ ଅଧିକ ପ୍ରଶସ୍ତ କରୁଛନ୍ତି । ଅର୍ଥନୈତିକ ସଂକଟ ଓ ବଜାର ସେମାନ ସ୍ପଷ୍ଟ

ମନ୍ଦା ସେପରି ଆହୁରି ଉତ୍କଟ ହୋଇଛି । ଆନ୍ତର୍ଜାତିକ ପୁଞ୍ଜିବାଦୀ ବଜାରରେ ମୁନାଫାର ଭାଗବଣ୍ଟା ନେଇ ଟଣାଟଣି କଷାକଷି ଦୁନିଆରେ ଖଣ୍ଡପ୍ରଳୟର ବାତାବରଣ ସୃଷ୍ଟି କରିଛି । ପୃଥିବୀର ବିଭିନ୍ନ ଅଞ୍ଚଳକୁ କେନ୍ଦ୍ର କରି ଡଲାରଷ୍ଟାର୍ଲିଂର ଶୀତଳ ଯୁଦ୍ଧ ଲାଗି ରହିଛି । ଏହି ଶୀତଳ ଯୁଦ୍ଧ ଯେ କୌଣସିବେଳେ ଗରମ ହୋଇଯିବ କିଏ କହିବ !

ଦିନ ଯେତିକି ଯାଉଛି, ପୁଞ୍ଜିବାଦୀ ଶିବିରର ଅନ୍ତର୍ବିରୋଧ ସେତିକି ପ୍ରବଳ ହେଉଛି । ମାର୍କିନ ଏକଚାଟିଆ ପୁଞ୍ଜିବାଦ ଓ ବ୍ରିଟିଶ ପୁଞ୍ଜିପତି ଶ୍ରେଣୀର ସ୍ୱାର୍ଥ ସଂଘର୍ଷ ଆନ୍ତର୍ଜାତିକ ବଜାରରେ ଅତି ନଗ୍ନ ରୂପରେ ଦେଖାଦେଉଛି । ବ୍ରିଟେନର ପଥ ଅନୁସରଣ କରି ଫ୍ରାନ୍ସ, ଇଟାଲି ପ୍ରଭୃତି ଇଉରୋପୀୟ ପୁଞ୍ଜିବାଦୀ ଦେଶ ସର୍ବଗ୍ରାସୀ ମାର୍କିନ ପୁଞ୍ଜିର କବଳରୁ ରକ୍ଷାପାଇବା ଉଦ୍ଦେଶ୍ୟରେ ଏବଂ ନିଜ ନିଜର ମୁନାଫା ପାଇଁ ମେଣ୍ଟ ଗଠନ କରୁଛନ୍ତି । ଅନ୍ୟାନ୍ୟ ଦିଗରେ ବ୍ରିଟିଶ କମନ୍‌ୱେଲ୍‌ଥ ଭୁକ୍ତ ଦେଶମାନଙ୍କ ସହ ବ୍ରିଟିଶ ପୁଞ୍ଜିପତି ଶ୍ରେଣୀର ସ୍ୱାର୍ଥ କଳହ ଦେଖାଦେଉଛି । କମନ-ୱେଲ୍‌ଥ ଭୁକ୍ତ କେତେକ ଦେଶର "ସ୍ୱାଧୀନ ନିରପେକ୍ଷ" ମନୋଭାବ ଏବଂ ସାମ୍ରାଜ୍ୟବାଦ-ବିରୋଧୀ ଧ୍ୱନି ବ୍ରିଟିଶ କମନ-ୱେଲ୍‌ଥର ଅନ୍ତର୍ବିରୋଧକୁ ପରିସ୍ଫୁଟ କରୁଛି । ଏସିଆ ଓ ଆଫ୍ରିକା ବଜାରକୁ ଇଙ୍ଗ-ମାର୍କିନ କବଳରୁ ମୁକ୍ତ ରଖିବା ପାଇଁ ଏସିଆର କେତେକ ଅନୁନ୍ନତ ପୁଞ୍ଜିବାଦୀ ଦେଶ ଭାରତବର୍ଷ ନେତୃତ୍ୱରେ ଏବଂ ଆରବ ଅଞ୍ଚଳର କେତେକ ଦେଶ ମିଶର ନେତୃତ୍ୱରେ ମେଣ୍ଟ ଗଠନ କରୁଛନ୍ତି । ସୋଜା କଥାରେ କହିବାକୁ ଗଲେ ଦୁନିଆର ପ୍ରତ୍ୟେକ ପୁଞ୍ଜିବାଦୀ ଦେଶ ଏକ ଅନ୍ତର୍ବିରୋଧରେ ଜଡ଼ିତ । ଏପରିକି ଅତି ଛୋଟ ଓ ଅନୁନ୍ନତ ପୁଞ୍ଜିବାଦୀ ରାଷ୍ଟ୍ର,

ଗୁଡ଼ିକ ଡଲାର୍-ଷ୍ଟର୍ଲିଂ ସ୍ୱାର୍ଥ ସଂଘର୍ଷରେ ସୁଯୋଗ ନେଇ ଉଭୟ-ପକ୍ଷ ସହ ଦର କଷାକଷି କରି ନିଜର କ୍ଷେତ୍ର ବୃଦ୍ଧି କରିବାରେ ଚେଷ୍ଟା କରୁଛନ୍ତି ।

ଆଜି ସାମ୍ରାଜ୍ୟବାଦୀ ଯୁଦ୍ଧଖୋର ଗୋଷ୍ଠୀ ମହା ଗୋଲକଧନ୍ଦାରେ ପଡ଼ିଛନ୍ତି । ଗୋଟିଏ ଦିଗରେ ଆସନ୍ନ ମୃତ୍ୟୁର ଭୟ ଏବଂ ସେଥିରୁ ରକ୍ଷା ପାଇବା ପାଇଁ ଯୁଦ୍ଧ ପ୍ରସ୍ତୁତି ଓ ଯୁଦ୍ଧ ମେଣ୍ଟ ଏବଂ ଅନ୍ୟ ଦିଗରେ ଆଭ୍ୟନ୍ତରୀଣ ଦ୍ୱନ୍ଦ୍ୱ ଫଳରେ ଏହି ଯୁଦ୍ଧ ମେଣ୍ଟଗୁଡ଼ିକ କ୍ରମାଗତ ଫାଟିଯାଉଛନ୍ତି । ସୋଭିଏତ ଋଷ ଓ ଚୀନକୁ ଧ୍ୱଂସ କରିବା ଏବଂ ନୂତନ ବିଶ୍ୱଯୁଦ୍ଧ ସୃଷ୍ଟିକରିବା ଦିଗରେ ପ୍ରଧାନ ଅଗ୍ରଣୀ ହେଉଛି ମାର୍କିନ ଯୁକ୍ତରାଷ୍ଟ୍ର । ପୁଞ୍ଜିବାଦୀ ରାଷ୍ଟ୍ର-ମାନଙ୍କୁ ନେଇ ଯୁଦ୍ଧ ମେଣ୍ଟ ଗଠନ କରିବା, ମାରଣାସ୍ତ୍ର ଉତ୍ପାଦନ ଦିଗରେ ଅଜସ୍ର ଅର୍ଥ ବ୍ୟୟ କରିବା, "କମ୍ୟୁନିଷ୍ଟ ଆକ୍ରମଣ' ର କାଳ୍ପନିକ ଭୟ ଦେଖାଇ ଅନୁନ୍ନତ ଦେଶମାନଙ୍କୁ ସାହାଯ୍ୟଦେବା ନାଁରେ ସେହି ଦେଶମାନଙ୍କରେ ଯୁଦ୍ଧଘାଟି ସ୍ଥାପନ କରିବା ଆଦି ସମସ୍ତ ପ୍ରକାର ଧ୍ୱଂସମୂଳକ କାର୍ଯ୍ୟକଳାପ ମାର୍କିନ ଯୁକ୍ତରାଷ୍ଟ୍ର ନେତୃତ୍ୱରେ ସଂଗଠିତ ହେଉଛି । କିନ୍ତୁ ଏତେ ଉଦ୍ୟମ ସତ୍ତ୍ୱେ ବି ନୂତନ ଯୁଦ୍ଧ ସୃଷ୍ଟି କରିବା ଦିଗରେ ମାର୍କିନ ସାମ୍ରାଜ୍ୟବାଦୀ-ମାନେ ଭରସା ପାଉ ନାହାନ୍ତି । କୋରିଆ ଯୁଦ୍ଧର ତିକ୍ତ ଅଭିଜ୍ଞତା ମାର୍କିନ ଯୁଦ୍ଧଖୋରଙ୍କ ମନରେ ଏବେ ବି ସତେଜ ରହିଛି । କୋରିଆ ଯୁଦ୍ଧକୁ ବିଶ୍ୱଯୁଦ୍ଧରେ ପରିଣତ କରିବା ପାଇଁ ମାର୍କିନ ସାମ୍ରାଜ୍ୟବାଦୀମାନେ କମ ଉଦ୍ୟମ କରି ନ ଥିଲେ । ଅବଶେଷରେ ସେ ସ୍ୱପ୍ନ ଧୂଳିସାତ୍ ହେଲା । ସବୁ ଯୁଦ୍ଧଖୋର ମିଳିତ ହୋଇ ମଧ୍ୟ ଉତ୍ତର-କୋରିଆର ବିଜୟୀ ସୈନ୍ୟବାହିନୀ ନିକଟରେ ପରାସ୍ତ ହେଲେ । ଏଣୁ କେଉଁ ଭରସାରେ ମାର୍କିନ ଯୁକ୍ତରାଷ୍ଟ୍ର ବିଶ୍ୱଯୁଦ୍ଧ ସୃଷ୍ଟି

କରିବା ଦିଗରେ ଏକାକୀ ଦାୟିତ୍ୱ ନେବ ! ଯେତେଦିନ ପର୍ଯ୍ୟନ୍ତ ଦୁନିଆର ସମସ୍ତ ପୁଞ୍ଜିବାଦୀ ରାଷ୍ଟ୍ର, ଏକଜୁଟ ହୋଇଛନ୍ତି ସେତେ-ଦିନ ପର୍ଯ୍ୟନ୍ତ ଦୁନିଆବ୍ୟାପୀ ଯୁଦ୍ଧ ସୃଷ୍ଟି କରିବା ଦିଗରେ ମାର୍କିନ ସାମ୍ରାଜ୍ୟବାଦୀମାନେ ନିଶ୍ଚିନ୍ତ ହୋଇ ପାରୁନାହାନ୍ତି । କିନ୍ତୁ ତାତ୍ପର୍ଯ୍ୟ ହେଉଛି ଯେ ମୁନାଫା ଦେଇ ପାରସ୍ପରିକ ସଂଘର୍ଷ ଓ ପ୍ରତିଯୋଗିତା ଏହି ଯୁଦ୍ଧ ମୋର୍ଚ୍ଚାକୁ ଦୁର୍ବଳ କରୁଛି ଏବଂ ସାମଗ୍ରିକ ଭାବେ ଯୁଦ୍ଧ ଉନ୍ମାଦନାକୁ ହ୍ରାସ କରୁଛି ।

ବଟନ ଏହି ପୁଞ୍ଜିବାଦୀ ଦୁନିଆ, ବଟନ ଏହି ପୁଞ୍ଜିବାଦୀ ଦ୍ୱନ୍ଦ୍ୱ । କେତେବେଳେ ଏମାନେ ଯୋଡ଼ି ହୁଅନ୍ତି, ପୁଣି କେତେ-ବେଳେ ଛିଣ୍ଡି ଯାଆନ୍ତି, କେତେବେଳେ ଶାନ୍ତ, ନିରପେକ୍ଷ ହୁଅନ୍ତି, କେତେବେଳେ ଉଗ୍ର ମୂର୍ତ୍ତି ଧାରଣ କରନ୍ତି; ଏସବୁର ଗତି ସଠିକ ଭାବେ ନିର୍ଦ୍ଧାରଣ କରିବା ସହଜ କଥା ନୁହେଁ । ସବୁ ପୁଞ୍ଜିବାଦୀ ଦେଶର ଆଭ୍ୟନ୍ତରୀଣ ପରିସ୍ଥିତି ଓ ସମସ୍ୟା ସବୁ ସମୟରେ ସମାନ ଧରଣର ନଥାଏ । ଏଣୁ ନିର୍ଦ୍ଦିଷ୍ଟ ଆନ୍ତର୍ଜାତିକ ସମସ୍ୟା ଉପରେ ସମସ୍ତଙ୍କର ଦୃଷ୍ଟିଭଙ୍ଗୀ ସମାନ ହୋଇନପାରେ । ତେବେ ସମସ୍ତଙ୍କର ସମାନ ଲକ୍ଷ୍ୟ—ମୁନାଫା । ପ୍ରତ୍ୟେକ ପୁଞ୍ଜିବାଦୀ ଦେଶ ନିଜ ନିଜର ପୁଞ୍ଜିର ପ୍ରସାର, ଅଧିକ ମୁନାଫା ଲୁଣ୍ଠନ କରିବା, ବିଦେଶୀବଜାର ଦଖଲ କରି ଆନ୍ତର୍ଜାତୀୟ ସଙ୍କଟରୁ ନିଜସ୍ୱ ପୁଞ୍ଜି-ବାଦୀ ବ୍ୟବସ୍ଥାକୁ ରକ୍ଷା କରିବା ଉଦ୍ଦେଶ୍ୟରେ ଏମାନେ ପରସ୍ପର ମଧ୍ୟରେ ଯେପରି ସଂଘର୍ଷ କରନ୍ତି ସେହିପରି ସେମାନଙ୍କ ସାଧାରଣ ଶତ୍ରୁ କମ୍ୟୁନିଜମ ବିରୁଦ୍ଧରେ ମୋର୍ଚ୍ଚା ମଧ୍ୟ ଗଠନ କରନ୍ତି । କୌଣସି ଯୁଦ୍ଧରେ ପୁଞ୍ଜିପତି ଶ୍ରେଣୀ ଯୋଗ ଦେବାବେଳେ କିମ୍ବା ଯୋଗ ଦେବା ପାଇଁ ଅସ୍ୱୀକୃତ ହେବାବେଳେ "ମୁନାଫା" ପ୍ରତି ଲକ୍ଷ୍ୟ ରଖି ନିଜର ନୀତି ଠିକ୍ କରନ୍ତି । ଉଦାହରଣ ସ୍ୱରୂପ—ଇଣ୍ଡୋଚୀନକୁ

କେନ୍ଦ୍ରକର ମାର୍କିନ ସାମ୍ରାଜ୍ୟବାଦୀମାନେ ଏସିଆରେ ବିଶ୍ୱଯୁଦ୍ଧର ରଙ୍ଗମଞ୍ଚ ଛିଡ଼ା କରିବାକୁ ଉଦ୍ୟମ କରିଥିଲେ ଏବଂ ସେଥିପାଇଁ ଫ୍ରାନ୍ସକୁ ଅଜସ୍ର ଅର୍ଥ ଓ ଯୁଦ୍ଧ ସରଞ୍ଜାମ ଋଣ ଆକାରରେ ଯୋଗାଇ ଥିଲେ । କିନ୍ତୁ ଏହି ଯୁଦ୍ଧରେ କ୍ରମାଗତ ପରାଜୟ ଓ ଅଜସ୍ର ଅର୍ଥ ବ୍ୟୟ ହେତୁ ଫରାସୀ ସାମ୍ରାଜ୍ୟବାଦୀମାନେ ହତୋତ୍ସାହିତ ହୋଇ ପଡ଼ିଥିଲେ ଏବଂ ମାର୍କିନ ଯୁକ୍ତରାଷ୍ଟ୍ରର ବିରୋଧ ସତ୍ତ୍ୱେ ବି ଆପୋଷ ମୀମାଂସା କରିବାକୁ ପ୍ରସ୍ତୁତ ଥିଲେ । ଅନ୍ୟ ଦିଗରେ ବ୍ରିଟିଶ ସାମ୍ରାଜ୍ୟବାଦୀମାନେ ଏହି ଯୁଦ୍ଧରେ ପୂର୍ଣ୍ଣ ସହଯୋଗ କରି ନ ଥିଲେ । କାରଣ ତଦ୍ଦ୍ୱାରା ସେମାନଙ୍କର କ୍ଷତିର ସମ୍ଭାବନା ବେଶି ଥିଲା । ଯଦିଚ ମିଳିତ ଯୁଦ୍ଧ ଉଦ୍ୟମ ଦ୍ୱାରା ସାମ୍ରାଜ୍ୟବାଦୀମାନେ ଇଣ୍ଡୋଚୀନ ରେ ଜୟଲାଭ କରନ୍ତି ତାହାହେଲେ ବ୍ରିଟେନ ନୂଆ ଉପନିବେଶ ପାଇବା ତ ଦୂରର କଥା, ବରଂ ମାର୍କିନ ସାମ୍ରାଜ୍ୟ-ବାଦୀମାନେ ନିଜର କ୍ଷମତା ବଳରେ ଇଣ୍ଡୋଚୀନକୁ ଏକଚାଟିଆ କରିବେ ଏବଂ ବ୍ରିଟେନର ପାର୍ଶ୍ୱବର୍ତ୍ତୀ ଉପନିବେଶଗୁଡ଼ିକୁ ଦଖଲ କରିବାକୁ ଚେଷ୍ଟା କରିବେ । ମାର୍କିନ ଯୁକ୍ତରାଷ୍ଟ୍ରର ଏହି ଦୁରଭିସନ୍ଧି ବୁଝିପାରି ବ୍ରିଟେନ ପୂର୍ଣ୍ଣ ଦାୟିତ୍ୱ ନେଇ ଯୁଦ୍ଧରେ ଯୋଗ ଦେବାକୁ ରାଜି ହେଲା ନାହିଁ । ଅବଶେଷରେ ମାର୍କିନ ଯୁଦ୍ଧ ଉଦ୍ୟମ ବିଫଳ ହେଲା । ସେହିପରି ସୁଏଜ କେନାଲ ଜାତୀୟକରଣ ନେଇ ମିଶର ବିରୁଦ୍ଧରେ ବ୍ରିଟେନ ଓ ଫ୍ରାନ୍ସର ଯୁଦ୍ଧ ଉଦ୍ୟମ ବିଫଳ ହେଲା । କାରଣ ମାର୍କିନ ସାମ୍ରାଜ୍ୟବାଦୀମାନେ ପ୍ରତ୍ୟକ୍ଷ ଭାବେ ଏହି ଯୁଦ୍ଧରେ ସହଯୋଗ କଲେ ନାହିଁ । ପ୍ରଥମତଃ ସୁଏଜକେନାଲ ଜାତୀୟକରଣ କ୍ଷେତ୍ରରେ ଆମେରିକାର କୌଣସି ପ୍ରତ୍ୟକ୍ଷ ସ୍ୱାର୍ଥ ନାହିଁ । ବରଂ ମଧ୍ୟ ପ୍ରାଚ୍ୟରୁ ବ୍ରିଟିଶ ଓ ଫରାସୀ ପ୍ରଭାବ ଲୋପ ହେଲେ ମାର୍କିନ ପୁଞ୍ଜିର ଏକଚାଟିଆ ଭିତ୍ତିଭୂମି କାୟମ ହେବାର ସୁବର୍ଣ୍ଣ ସୁଯୋଗ

ମିଳିବ । ଏଣୁ ଉପସାଗର ଯୁଦ୍ଧରେ ସହଯୋଗ କରି ଆରବ ରାଜ୍ୟଗୁଡ଼ିକର ଅପ୍ରିୟଭାଜନ ହେବା ଏବଂ ସୋଭିଏତ ରୁଷ ଓ ଚୀନ ବିରୁଦ୍ଧରେ ଆରବ ରାଜ୍ୟଗୁଡ଼ିକୁ ନେଇ ଯୁଦ୍ଧମଞ୍ଚ ଗଠନ କରିବାର ଆଶାକୁ ଜଳାଞ୍ଜଳି ଦେବାକୁ ଲାଭ କଣ ? ସୋଭିଏତ ରୁଷ ଓ ଚୀନ ବିରୁଦ୍ଧରେ ବିଶ୍ୱବ୍ୟାପୀ ଯୁଦ୍ଧ ସୃଷ୍ଟି କରିବା ପାଇଁ ମାର୍କିନ ସାମ୍ରାଜ୍ୟବାଦୀମାନେ ଶୁହାନ୍ତି । ଏ ଉଦ୍ୟମକୁ ସଫଳ କରିବାକୁ ହେଲେ ଦୁନିଆର ସମସ୍ତ ପୁଞ୍ଜିବାଦୀ ରାଷ୍ଟ୍ର ଏବଂ ପ୍ରଧାନତଃ ବ୍ରିଟେନ୍, ଫ୍ରାନ୍ସ ପ୍ରଭୃତି ଇଉରୋପୀୟ ସାମ୍ରାଜ୍ୟବାଦୀମାନଙ୍କର ପୂର୍ଣ୍ଣ ସହଯୋଗ ଏକାନ୍ତ ଆବଶ୍ୟକ । ସେଥିପାଇଁ ଆମେରିକା ବିଭିନ୍ନ ଦିଗରୁ ଏମାନଙ୍କ ଉପରେ ଚାପ ଦେଉଛି ଏବଂ ନିଜର ଇଚ୍ଛାଙ୍କ ଅନୁସରଣ କରିବା ପାଇଁ ସେମାନଙ୍କୁ ବାଧ୍ୟ କରୁଛି । ଆମେରିକାର ପ୍ରବଳ ଅର୍ଥନୈତିକ ଚାପ ଓ ବିରୋଧ ସତ୍ତ୍ୱେ ବି ଇଉରୋପୀୟ ସାମ୍ରାଜ୍ୟବାଦୀମାନେ ସୋଭିଏତ ଶିବିର ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିବାକୁ ବର୍ତ୍ତମାନ ପ୍ରସ୍ତୁତ ନୁହନ୍ତି । ବରଂ ସମାଜବାଦୀ ଶିବିର ସହ ବାଣିଜ୍ୟ ସମ୍ପର୍କ ସ୍ଥାପନ କରି ନିଜର ବଜାର ସମସ୍ୟାର ସମାଧାନ କରିବା, ଉତ୍ପାଦ ଦ୍ରବ୍ୟର ବିକ୍ରୟ ବଢ଼ାଇବା ଏବଂ ସମସ୍ତ ପ୍ରକାର ପ୍ରତିଯୋଗିତାରୁ ଜାତୀୟ ଅର୍ଥନୀତିକୁ ସୁରକ୍ଷିତ କରିବା ଏମାନଙ୍କର ବର୍ତ୍ତମାନ ଲକ୍ଷ୍ୟ । ସାରଣୀୟ ପୁଞ୍ଜିପତି ଶ୍ରେଣୀର ମୁଖପତ୍ର "ଇଷ୍ଟର୍ଣ୍ଣ ଇକୋନୋମିଷ୍ଟ"ର ଗୋଟିଏ ପ୍ରବନ୍ଧରୁ ଏହା ପରିଷ୍କାର ଜଣାପଡ଼େ ।

"West Europe was already moving away from the old Anti-Communist Alliance towards a new system in which common European interests would have to be defended on much

against America as against Russia and against all outside challenge" (From West European correspondent of the Eastern Economist, P. 547 Vol. XXVII No. 1')

ଅର୍ଥାତ୍ "ପଶ୍ଚିମ ଇଉରୋପୀୟ ଦେଶଗୁଡ଼ିକ ପୁରୁଣା କମ୍ୟୁନିଷ୍ଟ ବିରୋଧୀ ମେଣ୍ଟରୁ କ୍ରମେ ଦୂରେଇ ଯାଉଛନ୍ତି ଏବଂ ସାଧାରଣ ଇଉରୋପୀୟ ସ୍ୱାର୍ଥରକ୍ଷା କରିବା ଉଦ୍ଦେଶ୍ୟରେ ଏକ ନୂତନ ମେଣ୍ଟ ଗଠନ କରୁଛନ୍ତି । ରୁଷ ଓ ବାହାରର ଯେ କୌଣସି ଶକ୍ତି ବିରୁଦ୍ଧରେ ଏବଂ ପ୍ରଧାନତଃ ଆମେରିକା ବିରୁଦ୍ଧରେ ଇଉରୋପୀୟ ସ୍ୱାର୍ଥକୁ ସୁରକ୍ଷିତ କରିବା ଏହି ବ୍ୟବସ୍ଥାର ମୂଳ ଲକ୍ଷ୍ୟ ।"

କିନ୍ତୁ ପୁଞ୍ଜିପତି ଶ୍ରେଣୀ ଯେତେ ମେଣ୍ଟ ଗଠନ କଲେ ବି ଏହାର ସ୍ୱାଭାବିକ ଅର୍ଥନୈତିକ ନିୟମାନୁଯାୟୀ ସ୍ୱାର୍ଥ ଦ୍ୱନ୍ଦ୍ୱର ଅବସାନ ହୁଏ ନାହିଁ । ସୁଏଜ କେନାଲ ଜାତୀୟକରଣ କ୍ଷେତ୍ରରେ ଏହି କ୍ଷୁଦ୍ର ଇଉରୋପୀୟ ମେଣ୍ଟର ଅବସ୍ଥା ଯାହା ହେଲା, ତାହା ନିମ୍ନୋକ୍ତ ବକ୍ତବ୍ୟରୁ ସ୍ପଷ୍ଟ ଅନୁମିତ ହୁଏ ।

"The third foundation of continental policy was the unity of the little Europe; the Europe of the six, faced with Nasser's challenge, this produced nothing but fiasco with the French foreign Minister accusing Italy of having scuttled the London conference, with the German press accusing France of trying to involve her partners in the Algerian War, and the French press accusing Germans of wooing Nasser for machinery Order for the Aswan barrage." (Ibid)

ଏହି ପ୍ରବନ୍ଧରେ ଆହୁରି କୁହା ଯାଇଛି ଯେ ଷ୍ଟୁଭ ଇକଣ୍ଡବଣର ଷଡ଼ଯନ୍ତ୍ର ନାଜେଉରେ ସ୍ପୁମୁକି ବନ୍ଧରରେ ତେଙ୍କ ମେଣ୍ଟ ଦେଲେ ତାହାର ଶୋଚନୀୟ ପରିଣତ ଘଟିଲା । ପ୍ରତ୍ୟେକ ପ୍ରତ୍ୟେକଙ୍କୁ ଦୋଷ ଦେବାରେ ଲଗିଲେ । ଲଣ୍ଡନ ସନ୍ଧିଲଗାଙ୍କୁ ପଣ୍ଡ କଲେବୋଲି ଫ୍ରାନ୍ସର ବୈଦେଶିକ ମନ୍ତ୍ରୀ ଇଟାଲୀଙ୍କୁ ଦୋଷୀ କଲେ । ଆଲ୍‌ଜେରିଆ ଯୁଦ୍ଧରେ ଫ୍ରାନ୍ସ ତାହାର ଅନ୍ୟାନ୍ୟ ସାଥିଙ୍କୁ ଜଡ଼ିତ କରୁଛି ବୋଲି ଜର୍ମାନୀ ଫ୍ରାନ୍ସଙ୍କୁ ଦାୟୀ କଲା । ସେହିପରି ଅସ୍ୱାନ ବନ୍ଧର ଅର୍ଥ ଯୋଗାଡ ପାଇଁ ଜର୍ମାନୀ ନାସେରଙ୍କୁ ଖୋସାମତ କରୁଛି ବୋଲି ଫ୍ରାନ୍ସ ଜର୍ମାନଙ୍କୁ ଦାୟୀ କଲା । ଏହି ଉକ୍ତିରୁ ପୁଞ୍ଜିବାଦୀ ଅର୍ଥନୀତିର ପ୍ରକୃତ ସତ୍ୟତା ଧରା ପଡ଼େ । ଅନେକ ସ୍ଥଳରେ ମୂଳ ଶ୍ରେଣୀ ସ୍ୱାର୍ଥ ଏପରି ହେବା ଛାଣି ସୁଦ୍ଧା ଏମାନେ ନିଜ ମଧ୍ୟରେ ମତୈକ୍ୟ ସୃଷ୍ଟି କରିବା ଦିଗରେ ଅକ୍ଷମ ହେଉଛନ୍ତି ଏବଂ ମୁନାଫା ନେଇ ପରସ୍ପରଙ୍କ ବନ୍ଧୁତ୍ୱଙ୍କୁ ପରିତ୍ୟାଗ କରୁଛନ୍ତି । ଥରେ 'ଲଣ୍ଡନ ଇକୋନୋମିଷ୍ଟ' ଏ କଥା ଉଲ୍ଲେଖ କରି ଲେଖିଥିଲେ— "Nations can not be allied politically and Militarily if they are cutting each others throat commercially" ଅର୍ଥାତ୍— ବାଣିଜ୍ୟ ବ୍ୟବସାୟ ଦିଗରୁ ଯଦି ଏକ ଦେଶ ଅନ୍ୟର ଗଳା କାଟେ ତେବେ ରାଜନୈତିକ ଓ ସାମରିକ ଦିଗରୁ ମେଣ୍ଟ ହେବା ଅମ୍ଳକ ହେବ କିପରି ।

ସାମ୍ରାଜ୍ୟବାଦୀମାନଙ୍କର ଏହି ଦୁର୍ବଳତା ଦେଖି ମନେକରିବା ଭୁଲ ହେବ ଯେ ପୃଥିବୀରୁ ଯୁଦ୍ଧର ସମ୍ଭାବନା ଲୋପ ହେଲା । ଯୁଦ୍ଧ ହେଉଛି ପୁଞ୍ଜିବାଦୀ ଅର୍ଥନୀତିର ଉତ୍ପତ୍ତି । ଦୁଇ ଟିଇଟି ମହାଯୁଦ୍ଧ ଏହି ସାକ୍ଷ୍ୟ ବହନ କରେ । ପୁଞ୍ଜିବାଦ ସାମ୍ରାଜ୍ୟବାଦ ଥିବା ପର୍ଯ୍ୟନ୍ତ

ଯୁଦ୍ଧର ସମ୍ଭାବନା ପୂରା ମାତ୍ରାରେ ରହୁଛି । ପୁଞ୍ଜିବାଦୀ ରାଷ୍ଟ୍ର ଅର୍ଥନୈତିକ ସଙ୍କଟରୁ ରକ୍ଷା ପାଇବାକୁ ପାଇଁ ବିଭିନ୍ନ ସମୟରେ ବିଭିନ୍ନ ପନ୍ଥା ଅବଲମ୍ବନ କରନ୍ତି । ତହିଁ ମଧ୍ୟରୁ ଯୁଦ୍ଧ ଏକ ପନ୍ଥା । କିନ୍ତୁ ସବୁ ପୁଞ୍ଜିବାଦୀ ଦେଶର ଆଭ୍ୟନ୍ତରୀଣ ସମସ୍ୟା ସବୁ ସମୟରେ ସମାନ ଧରଣର ନଥିବା ହେତୁ ପନ୍ଥା ନିର୍ଣ୍ଣୟରେ ମଧ୍ୟ ସମତା ରହେନା । ଏଣୁ ଗୋଟିଏ ଦେଶ ଯୁଦ୍ଧ ପ୍ରସ୍ତୁତରେ ଆତ୍ମରକ୍ଷାର ସନ୍ଧାନ ଖୋଜୁଥିବା ବେଳେ ଅପରଟି ଯୁଦ୍ଧକୁ ଏଡ଼ି ବ୍ୟବସାୟ ବାଣିଜ୍ୟ ପ୍ରସାର ଦ୍ୱାରା ନିଜ ସମସ୍ୟାର ସମାଧାନ ଆଣିବା ପାଇଁ ଚେଷ୍ଟା କରେ । ଫଳତଃ ଯୁଦ୍ଧ ପଛେଇଯାଏ । କିନ୍ତୁ ଯେତେବେଳେ ଅନେକ ଶକ୍ତିଶାଳୀ ପୁଞ୍ଜିବାଦୀ ଦେଶର ଆଭ୍ୟନ୍ତରୀଣ ସମସ୍ୟା ସମାନ ଧରଣର ଥାଏ ଏବଂ ଯୁଦ୍ଧ ବ୍ୟତୀତ ସମାଧାନର ଅନ୍ୟ କୌଣସି ପନ୍ଥା ନଥାଏ, ସେତେବେଳେ ଯୁଦ୍ଧ ଅନିବାର୍ଯ୍ୟ । ଏଣୁ ସେମାନେ ସାମୟିକ ଦୁର୍ବଳ ହେଲେ ବି ପୁଣି ତେଜି ଉଠିବାକୁ ବେଶି ସମୟ ଲାଗେ ନାହିଁ । ଇତିହାସ ଶିକ୍ଷା ଦେଉଛି—ସାମ୍ରାଜ୍ୟ ବାଦୀମାନେ ନିଜର ଅସ୍ତିତ୍ୱକୁ ରକ୍ଷା କରିବାକୁ ପାଇଁ ଯେତେବେଳେ କୌଣସି ଉପାୟର ଆଶା ନଦେଖନ୍ତି ସେତେବେଳେ ସେମାନେ ବାମୁଡ଼ା କୁକୁର ପରି ହୁଅନ୍ତି ଏବଂ ଦୁଃସାହସିକତା ସହ ଯୁଦ୍ଧ ନିଆଁରେ ଝାମ୍ପ ଦିଅନ୍ତି ।

ଆଜି ପୁଞ୍ଜିବାଦୀ ଶିବିର ଆଧୁନିକ ଅସ୍ତ୍ର ଶସ୍ତ୍ରରେ ସଜ୍ଜିତ ଏବଂ ସୁସଂଗଠିତ ସୈନ୍ୟ ବାହିନୀ ସବୁ ସମୟରେ ଯୁଦ୍ଧପାଇଁ ପ୍ରସ୍ତୁତ ରହୁଛି । ମିଲିଟାରୀ ବଜେଟରେ କୋଟି କୋଟି ଅର୍ଥ ବ୍ୟୟ କରାଯାଉଛି । ପୃଥିବୀର ବିଭିନ୍ନ ଅଂଚଳରେ ସାମ୍ରାଜ୍ୟବାଦୀମାନେ ଯେପରି ଖଣ୍ଡ-ଯୁଦ୍ଧ ସୃଷ୍ଟି କରୁଛନ୍ତି ଏବଂ ଅନୁନ୍ନତ ଦେଶମାନଙ୍କୁ କବଳିତ

କରିବା ପାଇଁ ସେଠାରେ ସାମରିକ ବିଦ୍ରୋହ ସୃଷ୍ଟିକରି ନିଜର ବୋଲକରା ସରକାର ଗଢ଼ିବାରେ ଲଗି ପଡ଼ିଛନ୍ତି ଏଥିରୁ ଯେ କୌଣସି ମୁହୂର୍ତ୍ତରେ ବିଶ୍ୱଯୁଦ୍ଧ ବ୍ୟାପିଯିବା ଅସମ୍ଭବ ନୁହେଁ ।

## ସମାଜବାଦୀ ଶିବିର—ଶାନ୍ତି, ମୁକ୍ତି, ପ୍ରଗତିର ଦୁର୍ଗ

ସମାଜବାଦୀ ଶିବିରର ଅର୍ଥନୀତି ମଣିଷର ଗୃହବା ପୂରଣ ପାଇଁ ଉଦ୍ଦିଷ୍ଟ, ସମାଜବାଦୀ ଦେଶମାନଙ୍କର ଉତ୍ପାଦନ ବ୍ୟବସ୍ଥା ଉପରେ ବ୍ୟକ୍ତିଗତ ମାଲିକାନା ଲୋପ କରାଯାଇ ସାମାଜିକ ମାଲିକାନା ପ୍ରତିଷ୍ଠିତ ହୋଇଛି । ପୁଞ୍ଜିବାଦୀ ଉତ୍ପାଦନ ବ୍ୟବସ୍ଥାର ଅରାଜକତା ଏବଂ ବିଦେଶୀ ବଜାର ଦଖଲ କରିବାର ଆବଶ୍ୟକତା ସମାଜବାଦୀ ସମାଜରେ ଅନୁଭୂତ ହୁଏ ନାହିଁ । ଏଣୁ ସମାଜବାଦୀ ଅର୍ଥନୀତି ଉତ୍ତରୋତ୍ତର ଉନ୍ନତି ପଥରେ ଅଗ୍ରସର ହେଉଛି ଏବଂ ମଣିଷ ସମାଜକୁ ସର୍ବାଙ୍ଗସୁନ୍ଦର କରି ଗଢ଼ିତୋଳୁଛି । ପୁଞ୍ଜିପତିମାନେ ଅର୍ଥନୈତିକ ସଙ୍କଟରୁ ମୁକ୍ତି ପାଇବା ପାଇଁ ଯୁଦ୍ଧ ଭିଆନ୍ତି ଓ ମଣିଷ ସମାଜକୁ ଅଶେଷ ଦୁଃଖ ନିର୍ଯାତନା ଭିତରକୁ ଠେଲି ଦିଅନ୍ତି । କିନ୍ତୁ ସମାଜବାଦୀ ଅର୍ଥନୀତିର ବିକାଶ ପଥରେ ଯୁଦ୍ଧ ଚରମ ବାଧା ସୃଷ୍ଟି କରେ ଏବଂ ସାମାଜିକ ପ୍ରଗତିର ଗତି ରୁଦ୍ଧ କରେ । ଏଇଥି ପାଇଁ ସମାଜବାଦୀ ଶିବିର ଚାହେଁ ଦୁନିଆରେ ସ୍ଥାୟୀ ଶାନ୍ତି । ସୋଭିଏତ ସୋଭିଏତ ନେତୃତ୍ୱରେ ସମାଜବାଦୀ ଶିବିର ଚାହେଁ ଦୁନିଆର ସ୍ଥାୟୀ ଶାନ୍ତି । ସୋଭିଏତ ସୋଭିଏତ ନେତୃତ୍ୱରେ ସମାଜବାଦୀ ଶିବିର ଆନ୍ତର୍ଜାତିକ ଉତ୍ତେଜନା ହ୍ରାସ କରିବା ଦିଗରେ ବୈଦେଶିକ ନୀତି ନିୟନ୍ତ୍ରଣ କରୁଛି, ଜାତି ଜାତି

ଓ ଦେଶ ଦେଶ ମଧ୍ୟରେ ଭ୍ରାତୃତ୍ୱ ସ୍ଥାପନ କରି ଶାନ୍ତି ପ୍ରତିଷ୍ଠାର ପଥ ସୁଗମ କରୁଛି । ଏମାନଙ୍କର ବୈଦେଶିକ ନୀତି ଯୁଦ୍ଧଖୋରମାନଙ୍କର ଆକ୍ରମଣାତ୍ମକ ପରିକଳ୍ପନା ଓ ଷଡ଼ଯନ୍ତ୍ରକୁ ପଦାରେ ପକାଇ ଦେବାରେ ସାହାଯ୍ୟ କରୁଛି । କୋରିଆ, ଇଣ୍ଡୋଚୀନ, ଓ ମିଶରକୁ କେନ୍ଦ୍ର କରି ଇଙ୍ଗ-ମାର୍କିନ ଗୋଷ୍ଠୀର ବିଶ୍ୱଯୁଦ୍ଧ ଲଗାଇ ଦେବାର ଷଡ଼ଯନ୍ତ୍ର ସମାଜବାଦ ଶାନ୍ତିପୂର୍ଣ୍ଣ ବୈଦେଶିକ ନୀତି ନିକଟରେ ପରାସ୍ତ ହୋଇଛି । ପୂର୍ବେ ସାମ୍ରାଜ୍ୟବାଦୀମାନେ ଅନୁନ୍ନତ ଦେଶମାନଙ୍କୁ ଲୁଣ୍ଠନ କରୁଥିଲେ ଏବଂ ସାମରିକ ଶକ୍ତି ପ୍ରୟୋଗ କରି ଜାତୀୟ ମୁକ୍ତି ଆନ୍ଦୋଳନକୁ ସିଧାସଳଖ ଦମନ କରୁଥିଲେ । କିନ୍ତୁ ସମାଜତାନ୍ତ୍ରିକ ଶିବିରର ଅଭ୍ୟୁଦୟ ଫଳରେ ଆନ୍ତର୍ଜାତିକ ରାଜନୀତିରେ ନୂତନ ପରିସ୍ଥିତି ସୃଷ୍ଟି ହେଲା , ଏବଂ ଅନୁନ୍ନତ ପରାଧୀନ ଦେଶମାନଙ୍କରେ ମୁକ୍ତି ଆନ୍ଦୋଳନ ତୀବ୍ର ହୋଇ ଉଠିଲା । ସାମ୍ରାଜ୍ୟବାଦୀ ମାନେ ମରଣ ଆତଙ୍କ ଗଣିଲେ । ଦେଶେ ଦେଶେ ଶୋଷକ ଶ୍ରେଣୀ ବିରୁଦ୍ଧରେ ପ୍ରବଳ ଗଣବିକ୍ଷୋଭ ଜାଗି ଉଠିଲା । କେତେକ ଦେଶରେ ସାମ୍ରାଜ୍ୟବାଦୀ ପୁଞ୍ଜିବାଦୀ ଶୋଷଣକୁ ଉଚ୍ଛେଦ କରିବାପାଇଁ ଶ୍ରମିକ ଶ୍ରେଣୀର ରାଷ୍ଟ୍ର ଗଠିତ ହେଲା , ଏବଂ ଅନ୍ୟ କେତେକ ଦେଶରେ ସାମ୍ରାଜ୍ୟବାଦୀମାନେ ହୁସିଆର ହୋଇ ଜାତୀୟ ଧନିକ ଶ୍ରେଣୀ ସହ ଆପୋଷ କରି ସେମାନଙ୍କୁ କ୍ଷମତା ହସ୍ତାନ୍ତର କଲେ ଏବଂ ସେଠାରେ ନିଜର ଅର୍ଥନୈତିକ ଶୋଷଣକୁ କାଏମ ରଖିଲେ ।

ଏସିଆ-ଆଫ୍ରିକାର ଅନୁନ୍ନତ ପୁଞ୍ଜିବାଦୀ ରାଷ୍ଟ୍ରମାନଙ୍କୁ ସୋଭିଏତ ଓ ଚୀନ ବିରୋଧୀ ଯୁଦ୍ଧମେଣ୍ଟରେ ଯୋଗଦେବା ନିମନ୍ତେ ସାମ୍ରାଜ୍ୟବାଦୀ ଗୋଷ୍ଠୀ ବାଧ୍ୟ କରୁଛନ୍ତି । କିନ୍ତୁ ଏଥି ଭିତରୁ କେତେକ ଦେଶ ଯଥା—ଭାରତ, ସିଲୋନ, ବର୍ମା, ଇଣ୍ଡୋନେସିଆ, ଇଜିପ୍ଟ, ସିରିଆ, ପ୍ରଭୃତି କୌଣସି ଯୁଦ୍ଧମେଣ୍ଟରେ ଯୋଗ ନଦେଇ ସ୍ୱାଧୀନ ଭାବରେ

ନିଜର ଆର୍ଥିକ ସଂସ୍ଥାକୁ ଗଢ଼ିବାକୁ ଚାହାନ୍ତି । ଯୁଦ୍ଧର ଦାୟିତ୍ୱ ନେବା ଅପେକ୍ଷା ଆନ୍ତର୍ଜାତିକ ବଜାରରେ ଦର କଷାକଷି କରି ମୁନାଫା ଅର୍ଜନ କରିବା ହେଉଛି ଏମାନଙ୍କର ପ୍ରଧାନ ଲକ୍ଷ୍ୟ । ଏହି ମୁନାଫା ଅର୍ଜନ ପାଇଁ ଆବଶ୍ୟକ ପ୍ରଚୁର ପୁଞ୍ଜି ଓ ଗୁରୁ ଶିଳ୍ପ ପ୍ରତିଷ୍ଠା ହାତରେ ଅବଶ୍ୟମ୍ଭାବୀ ସମ୍ପାଦିତ । ଏହି ମୌଳିକ ଅଭାବ ଦୂର ନହେବା ପର୍ଯ୍ୟନ୍ତ ଯୁଦ୍ଧର ଦାୟିତ୍ୱ ନେବା ମାରାତ୍ମକ । ଏମାନଙ୍କର ଏତାଦୃଶ ଅବାଧତାରେ କ୍ଷୁବ୍ଧ ହୋଇ ସାମ୍ରାଜ୍ୟବାଦୀମାନେ ଏହି ସବୁ ଦେଶର ଗୁରୁ ଶିଳ୍ପ ପାଇଁ ସମ୍ପାଦିତ ସହାୟତା ଦେଉନାହାନ୍ତି, ଓଲଟା ଅର୍ଥନୈତିକ ଓ ରାଜନୈତିକ ଚାପ ସୃଷ୍ଟି କରି ସେମାନଙ୍କୁ ବେକାଇଦାରେ ପକାଇବା ଓ ଭୟଭୀତ କରିବା ପାଇଁ ଉଦ୍ୟମ କରୁଛନ୍ତି କିନ୍ତୁ ଏହି ଦେଶମାନେ ସେଥିପାଇଁ ଭୀତ ନୁହନ୍ତି । ସମାଜବାଦୀ ଶିବିର ସହ ବାଣିଜ୍ୟ ସମ୍ପର୍କ ସ୍ଥାପନ କରି ଆନ୍ତର୍ଜାତିକ ରଙ୍ଗମଞ୍ଚରେ ଚାଲିଥିବା ଦ୍ୱନ୍ଦ୍ୱର ପୂର୍ଣ୍ଣ ସୁଯୋଗ ନେଉଛନ୍ତି ଏବଂ ସାମ୍ରାଜ୍ୟବାଦୀମାନଙ୍କ ଉପରେ ଓଲଟା ଚାପ ସୃଷ୍ଟି କରୁଛନ୍ତି । ଫଳତଃ ସାମ୍ରାଜ୍ୟବାଦୀମାନଙ୍କର ଘାଟି ବ୍ୟୂହମଧ୍ୟ ଭାଙ୍ଗି ଲେଉଟି ଆସୁଛି ।

ସମାଜବାଦୀ ଶିବିରର ଅସ୍ତିତ୍ୱ ଥିବାହେତୁ ଏହି ଅନୁନ୍ନତ ପୁଞ୍ଜିବାଦୀ ଦେଶମାନେ ତଥାକଥିତ "ଶାନ୍ତି ଓ ନିରପେକ୍ଷ" କଥା କହି ମୁଣ୍ଡଟେକି ରହି ପାରୁଛନ୍ତି ଏବଂ ସାମ୍ରାଜ୍ୟବାଦୀମାନଙ୍କ ସହ ଦର କଷାକଷି କରି ନିଜର ଶକ୍ତି ବୃଦ୍ଧି କରି ପାରୁଛନ୍ତି । ତା ନହେଲେ ଏହି ନିରପେକ୍ଷ ମୁଖାଧାରୀ ଦେଶଗୁଡ଼ିକର ଭିତ୍ତି ଦୋହଲି ଯାଆନ୍ତା । ଏହି ସବୁ ଦେଶରେ ଜାତୀୟ ଅର୍ଥନୀତି ଉପରେ ସମାଜବାଦୀ ଶିବିରର ପ୍ରଭାବକୁ ଦୂର କରିବାକୁ ଯାଇଁ ସାମ୍ରାଜ୍ୟବାଦୀ ମାନେ ନିଜର ଅନିଚ୍ଛା ସତ୍ତ୍ୱେ ଗୁରୁଶିଳ୍ପ ପ୍ରତିଷ୍ଠା ପାଇଁ ସାହାଯ୍ୟ କରୁଛନ୍ତି । ଅପର ହାତରେ ସୋଭିଏତ ରାଷ୍ଟ୍ର ପୁଞ୍ଜିବାଦୀ ଶିବିରରେ ଥିବା ଅନ୍ତର୍ଦ୍ୱନ୍ଦ୍ୱର ସୁଯୋଗ

ନେଇ ତାକୁ ଶାନ୍ତି ରକ୍ଷା କରିବା ଦିଗରେ ଏବଂ ଗଣତନ୍ତ୍ର ବିରୋଧୀ ଯୁଦ୍ଧଖୋରମାନଙ୍କୁ ଦୁର୍ବଳ କରିବା ଦିଗରେ ବ୍ୟବହାର କରୁଛି । ଏହି ଅନୁନ୍ନତ ପୁଞ୍ଜିବାଦୀ ଦେଶମାନେ ଯେପରି ସିଧାସଳଖ ଯୁଦ୍ଧ ମେଣ୍ଟରେ ଯୋଗ ନଦିଅନ୍ତି ଏବଂ ସାମ୍ରାଜ୍ୟବାଦୀଙ୍କର କଣ୍ଢେଇ ଯେପରି ଏମାନଙ୍କ ଉପରେ ପ୍ରତିଷ୍ଠିତ ନହୁଏ ସେ ଦୃଷ୍ଟିରୁ ସମାଜ-ବାଦୀ ଶିବିର ଏହି ସବୁ ଦେଶକୁ ଅଯାଚିତ ଭାବେ ଆର୍ଥିକ ସାହାଯ୍ୟ ଦେଇ ଶିଳ୍ପ ଗଠନ ଦିଗରେ ସାହାଯ୍ୟ କରୁଛି । ସୋଭିଏତ ବାଣିଜ୍ୟ ନୀତିରେ କୌଣସି ରାଜନୈତିକ ଦୁରଭିସନ୍ଧି କିମ୍ବା କ୍ଷତିକର ସର୍ତ୍ତ ନଥିବା ହେତୁ ଏହି ଦେଶମାନେ ଅଧିକରୁ ଅଧିକତର ବାଣିଜ୍ୟ ସମ୍ପର୍କ ସ୍ଥାପନ କରୁଛନ୍ତି ଏବଂ ତଦ୍ଦ୍ୱାରା ଲାଭବାନ ହେଉଛନ୍ତି । କେବଳ ଏଇ କେତେକ ଦେଶ ନୁହନ୍ତି, ଏସିଆ ଆଫ୍ରିକା ଓ ଇଉରୋପର ବହୁଦେଶ ସମାଜବାଦୀ ଶିବିର ସହ ବାଣିଜ୍ୟ ସମ୍ପର୍କ ସ୍ଥାପନ କରିବାକୁ ବ୍ୟାକୁଳ । ଫଳତଃ ଯୁଦ୍ଧଖୋର ସାମ୍ରାଜ୍ୟବାଦୀ ମାନଙ୍କର ହୁକୁମତ ବହୁଳାଂଶରେ ହ୍ରାସ ପାଇଛି, ଯୁଦ୍ଧ ପ୍ରସ୍ତୁତିରେ ମଧ୍ୟ ବ୍ୟାଘାତ ସୃଷ୍ଟି ହୋଇଛି । ଲେନିନଙ୍କ ଅନୁସୃତ ଶାନ୍ତିପୂର୍ଣ୍ଣ ସହାବସ୍ଥାନ (**Peaceful Co-existence**) ନୀତି ଦ୍ୱାରା ସୋଭିଏତର ବୈଦେଶିକ ନୀତି ନିୟନ୍ତ୍ରିତ ହେଉଛି । ଏହି ନୀତି ଅନୁଯାୟୀ ପ୍ରତ୍ୟେକ ଜାତିର ସାର୍ବଭୌମ କ୍ଷମତା ଓ ଜାତୀୟ ସ୍ୱାଧୀନତା ଅଲଙ୍ଘନୀୟ, ଅନ୍ୟ ଦେଶର ଆଭ୍ୟନ୍ତରୀଣ ବ୍ୟାପାରରେ ହସ୍ତକ୍ଷେପ ନିଷେଧ, ଅନାକ୍ରମଣ, ବନ୍ଧୁତ୍ୱପୂର୍ଣ୍ଣ ସହଯୋଗମୂଳକ ସମ୍ପର୍କ, ସାମ୍ୟ ଓ ପାରସ୍ପରିକ ସାହାଯ୍ୟ ସହଯୋଗ ଭିତ୍ତିରେ ବାଣିଜ୍ୟ ସଂପର୍କ ପ୍ରତିଷ୍ଠା ଦ୍ୱାରା ସାର୍ବଜନୀନ ଶାନ୍ତି ଓ ମୈତ୍ରୀପ୍ରତିଷ୍ଠା କରାଯାଇ ପାରିବ । ଏହି ନୀତିକୁ ଆଶ୍ରୟ କରି ସମାଜବାଦୀ ଶିବିର ପ୍ରତ୍ୟେକ ରାଷ୍ଟ୍ର ସହ ସମ୍ପର୍କ ପ୍ରତିଷ୍ଠା କରିବାକୁ ସଦାସର୍ବଦା ଉନ୍ମୁଖ । କିନ୍ତୁ

ପଶ୍ଚିମଶ୍ରେଣୀ ସାମ୍ରାଜ୍ୟବାଦୀମାନେ ସେମାନଙ୍କର ଯୁଦ୍ଧ ଚକ୍ରାନ୍ତ ବ୍ୟର୍ଥ ହେବ ଜାଣି ଉକ୍ତ ନୀତି ବିରୁଦ୍ଧରେ କୁତ୍ସା ରଟନା କରିବାରେ ଲାଗିଛନ୍ତି। ତଥାପି ପୃଥିବୀର ବହୁଦେଶ ଏହି ନୀତିକୁ ସମର୍ଥନ କଲେଣି ଏବଂ ଅନେକ ସମର୍ଥନ କରିବେ ବୋଲି ଆଗ୍ରହ ପ୍ରକାଶ କଲେଣି। ଏହାଦ୍ୱାରା ଯେପରି ଗୋଟିଏ ଦିଗରେ ଶାନ୍ତି ଆନ୍ଦୋଳନ ବଳିଷ୍ଠ ଓ ବ୍ୟାପକ ହେଉଛି ସେହିପରି ଅନ୍ୟଦିଗରେ ଯୁଦ୍ଧବାଦୀମାନଙ୍କର ହୀନ ଚକ୍ରାନ୍ତ ପଣ୍ଡ ହେଉଛି। ସୋଭିଏତ ସମାଜ କ୍ରୁଶ୍ଚେଭ ନିକଟରେ ସାମ୍ରାଜ୍ୟବାଦୀ ଗୋଷ୍ଠୀ ଯେ କ୍ରମାଗତ ହାର ମାନୁଛନ୍ତି ଏହା ସ୍ପଷ୍ଟ ପ୍ରମାଣିତ ହୋଇଛି। ସମାଜବାଦୀ ଶିବିରର ଶାନ୍ତି ମୂଳକ ଉଦ୍ୟମ ଦୁନିଆର ମୁକ୍ତିକାମୀ ଜନସାଧାରଣଙ୍କ ନିକଟରେ ଆଦୃତ ହେଉଛି। ଏବଂ ଜନପ୍ରିୟତା ଦିନକୁ ଦିନ ବୃଦ୍ଧି ପାଉଛି।

## ବିଶ୍ୱ ରାଜନୀତିରେ ନେହେରୁ ସରକାରର ଭୂମିକା

ଦୁଇ ଶିବିର ବିଭକ୍ତ ପୃଥିବୀର ରାଜନୈତିକ ଓ ଅର୍ଥନୈତିକ ନୀତିକୁ ସମ୍ମୁଖରେ ରଖି ପ୍ରତ୍ୟେକ ପୁଞ୍ଜିବାଦୀ, ସାମନ୍ତବାଦୀ, ଔପନିବେଶିକ ଓ ଅର୍ଦ୍ଧ ଔପନିବେଶିକ ଦେଶର ଆଭ୍ୟନ୍ତରୀଣ ପରିସ୍ଥିତି, ଜାତୀୟ ସରକାରର ଶ୍ରେଣୀ ଚରିତ୍ର ଓ ବୈଶିଷ୍ଟ୍ୟ, ଜାତୀୟ ଓ ବୈଦେଶିକ ନୀତି ଏବଂ ସର୍ବୋପରି ସେ ଦେଶରେ ବିପ୍ଳବୀ ଆନ୍ଦୋଳନର ଗତି ଓ ପ୍ରକୃତି ନିର୍ଦ୍ଧାରଣ କରିବାକୁ ହେବ। ପୁଞ୍ଜିବାଦର ବିବର୍ତ୍ତନ ଫଳରେ ପୃଥିବୀରେ ଆଜି ଏପରି ଏକ ଯୁଗ ଆସିଛି, ଯେତେବେଳେ କୌଣସି ଧନତାନ୍ତ୍ରିକ ଦେଶ, ଆନ୍ତର୍ଜାତିକ ଘଟଣାବଳୀ ଓ ସମସ୍ୟାଠାରୁ ଦୂରରେ ରହି ସ୍ୱ ଇଚ୍ଛାନୁଯାୟୀ ଓ

ନୂତନ ପ୍ରଣାଳୀରେ ରାଷ୍ଟ୍ର ପରିଚାଳନା କରି ସ୍ୱତନ୍ତ୍ର ଭାବେ ବଞ୍ଚି ରହିବା ସମ୍ଭବ ନୁହେଁ । ଏଣୁ ଲେନିନଙ୍କ ଭାଷାରେ, "ପୁଞ୍ଜିବାଦ ଆଜି ବିଶ୍ୱପୁଞ୍ଜିବାଦରେ ରୂପାନ୍ତରିତ ହୋଇଛି" । ସୋଭିଏତ ଯୁକ୍ତରାଷ୍ଟ୍ର ଓ ଚୀନ ପ୍ରଭୃତି ସମାଜତାନ୍ତ୍ରିକ ଓ ନୂଆ ଗଣତାନ୍ତ୍ରିକ ଦେଶମାନଙ୍କୁ ଛାଡ଼ିଦେଲେ ସାରା ପୃଥିବୀକୁ ତାର ପୁଞ୍ଜି-ଶୃଙ୍ଖଳ ବେଷ୍ଟନ କରି ରହିଛି । ପ୍ରତ୍ୟେକ ପୁଞ୍ଜିବାଦୀ ଦେଶର ସରକାର ଆନ୍ତର୍ଜାତିକ ଧନତନ୍ତ୍ର ସହ ଆଜି-ଘନିଷ୍ଠ ଭାବେ ଜଡ଼ିତ । ସେହି ଦୃଷ୍ଟିକୋଣରୁ ବିଚାର କଲେ ଭାରତବର୍ଷର ପୁଞ୍ଜିବାଦୀ ରାଷ୍ଟ୍ର ବିଶ୍ୱ-ପୁଞ୍ଜିବାଦୀ-ଶିବିର ଅନ୍ତର୍ଭୁକ୍ତ । ବର୍ତ୍ତମାନ ଯୁଗରେ କୌଣସି ରାଷ୍ଟ୍ରର ବୈଦେଶିକ ନୀତି ସେହି ରାଷ୍ଟ୍ରର କୌଣସି ବିଶିଷ୍ଟ ନେତା ବା ବ୍ୟକ୍ତିର ସଦିଚ୍ଛା ଉପରେ ନିର୍ଭର କରେନା । କୌଣସି ରାଷ୍ଟ୍ରର ବୈଦେଶିକ ନୀତି କହିଲେ ବୁଝିବାକୁ ହେବ, ଯେଉଁ ଶ୍ରେଣୀ ହାତରେ ଏହି ରାଷ୍ଟ୍ର, ସେହି ଶ୍ରେଣୀର ବୈଦେଶିକ ନୀତି । ଶ୍ରେଣୀ ଊର୍ଦ୍ଧ୍ୱରେ ରାଷ୍ଟ୍ରର ଅବସ୍ଥାନ ଅସମ୍ଭବ । ଏଣୁ ରାଷ୍ଟ୍ରର ବୈଦେଶିକ ନୀତି କହିଲେ ତାହା କୌଣସି ନା କୌଣସି ଶ୍ରେଣୀର ଆଶା ଆକାଂକ୍ଷା ପ୍ରକାଶ କରିବାକୁ ବାଧ୍ୟ । ପ୍ରଥମେ ବିଚାର କରିବା ଦରକାର ଏହି ରାଷ୍ଟ୍ର କେଉଁ ଶ୍ରେଣୀର ଏବଂ ଆନ୍ତର୍ଜାତିକ କ୍ଷେତ୍ରରେ ସେହି ଶ୍ରେଣୀର ସ୍ୱାର୍ଥ, ଉଦ୍ଦେଶ୍ୟ ବା ଅଭିଳାଷ କଣ ଏବଂ ତା' ସମ୍ମୁଖରେ ମୂଳ ସମସ୍ୟାମାନ କଣ ? ରାଷ୍ଟ୍ରର ଚାଳକ ହୁଏତ ଶୋଷକ ନଚେତ୍ ବା ଶୋଷିତ ଶ୍ରେଣୀ । ଶୋଷକ ଓ ଶୋଷିତ ଉଭୟ ଶ୍ରେଣୀର ସ୍ୱାର୍ଥକୁ ଏକକାଳୀନ ପ୍ରକାଶ କରୁଥିବ, ଏପରି ଏକ ବୈଦେଶିକ ନୀତିର ଅସ୍ତିତ୍ୱ ରହି ନପାରେ । ଏଣୁ ଦେଶର ଆଭ୍ୟନ୍ତରୀଣ କ୍ଷେତ୍ରରେ ପୁଞ୍ଜିପତି ଜମିଦାର ଓ ଅନ୍ୟାନ୍ୟ ଶୋଷକ ଶ୍ରେଣୀର ପ୍ରତିନିଧି ହିସାବରେ ଶ୍ରମିକ କୃଷକ ଓ ଶୋଷିତ ଜନସାଧାରଣଙ୍କୁ ଦମନ

କରୁଥିବା ରାଷ୍ଟ୍ରର ବୈଦେଶିକ ନୀତି ଯେତେ ମନଲୋଭା ହେଉନା କାହିଁକି ତାକୁ ଚିହ୍ନିବାରେ ବିଶେଷ କଷ୍ଟ ହେବ ନାହିଁ ।

ଆନ୍ତର୍ଜାତିକ ଯୁଦ୍ଧ ଓ ଶାନ୍ତିର ପ୍ରଶ୍ନ ଏକ ବାସ୍ତବ ପ୍ରଶ୍ନ । ଦୁନିଆର ଉଭୟ ଶୋଷକ ଓ ଶୋଷିତ ଶ୍ରେଣୀ ନିଜ ନିଜର ଶ୍ରେଣୀ ସ୍ୱାର୍ଥ ଦୃଷ୍ଟିରୁ ଏହି ପ୍ରଶ୍ନକୁ ବିଚାର କରୁଛନ୍ତି । ଯୁଦ୍ଧ ଓ ଶାନ୍ତିର ପୃଷ୍ଠଭୂମିକା ବ୍ୟତୀତ କୌଣସି ରାଷ୍ଟ୍ରର ବୈଦେଶିକ ନୀତିକୁ ଠିକ ଭାବେ ବିଶ୍ଳେଷଣ କରିବା ସମ୍ଭବ ନୁହେଁ । ଏହି ସମସ୍ୟାକୁ କେନ୍ଦ୍ର କରି ଦୁନିଆର ଶୋଷକ ଓ ଶୋଷିତ ଶ୍ରେଣୀର ରାଷ୍ଟ୍ରମାନେ ଦୁଇ ପରସ୍ପର ବିରୋଧୀ ଶିବିରରେ ବିଭକ୍ତ ହୋଇଛନ୍ତି । ସୁତରାଂ ଆଜି ଆନ୍ତର୍ଜାତିକ ରାଜନୀତିରେ "ନିରପେକ୍ଷ" କଥାଟି ସଂପୂର୍ଣ୍ଣ ଅର୍ଥ ହୀନ । ଦୁଇ ପରସ୍ପର ବିରୋଧୀ ଶିବିରମଧ୍ୟରୁ କୌଣସି ଗୋଟିକକୁ ସମର୍ଥନ କରୁନାହିଁ କିମ୍ବା ଉଭୟକୁ ସମର୍ଥନ କରୁଛନ୍ତି, ଏପରି କୌଣସି ରାଷ୍ଟ୍ର ଓ ତା'ର ବୈଦେଶିକ ନୀତିର କଳ୍ପନା କରାଯାଇ ନପାରେ । ଏଣୁ 'ନିରପେକ୍ଷ' କଥାଟି କେବଳ ଅର୍ଥହୀନ ନୁହେଁ — ପୁଞ୍ଜିବାଦର ଏକ ବିଶେଷ ପରିସ୍ଥିତିରେ ଏକ ବିଶେଷ କୌଶଳ । ଭାରତବର୍ଷ ସୋଭିଏତ୍ ଶାନ୍ତି ଶିବିରର ଅନ୍ତର୍ଭୁକ୍ତ ନୁହେଁ । ପଣ୍ଡିତ ନେହେରୁ ନିରପେକ୍ଷ ରୁହନ୍ତୁ ଅଥବା ସୋଭିଏତ ଶିବିର ପ୍ରତି ଯେତେ ମୌଖିକ ଶ୍ରଦ୍ଧା ଦେଖାନ୍ତୁ ନା କାହିଁକି ଏକଥା ଅତି ପରିଷ୍କାର ଯେ ବିଶ୍ୱଶାନ୍ତି ଶିବିରର ସ୍ୱାର୍ଥରକ୍ଷା କରିବା ଭାରତର ବୈଦେଶିକ ନୀତିର ମୂଳ ଲକ୍ଷ୍ୟ ନୁହେଁ । ପ୍ରଶ୍ନ ହେଉଛି—ଶାନ୍ତି-ଶିବିରର ସ୍ୱାର୍ଥରକ୍ଷା ଯଦି ନେହେରୁ ସରକାରର ମୂଳ ଉଦ୍ଦେଶ୍ୟ ନୁହେଁ, ତାହାହେଲେ ସେ କେଉଁ ଶିବିରର ସ୍ୱାର୍ଥ ରକ୍ଷାକାରୀ ? ବର୍ତ୍ତମାନ ଦୁନିଆରେ ତୃତୀୟ ଶିବିରର ଅସ୍ତିତ୍ୱ ଅସମ୍ଭବ । ମୂଳତଃ ଦୁଇ ପରସ୍ପର ବିରୋଧୀ ଶିବିର ମଧ୍ୟରୁ ପୁଞ୍ଜିବାଦୀ ଯୁଦ୍ଧ ଶିବିରର

ସ୍ୱାର୍ଥରକ୍ଷା କରିବା ବ୍ୟତୀତ ଅନ୍ୟ ପନ୍ଥା ନାହିଁ । ଏଠାରେ ପ୍ରଶ୍ନ ଉଠିବା ସ୍ୱାଭାବିକ ଯେ ନେହେରୁ ସରକାର କଣ ଆମେରିକା ଓ ବ୍ରିଟେନର ପକ୍ଷ କୁଣ୍ଢେଇ ? ତାଂର କଣ ନିଜସ୍ୱ କ୍ଷମତା ନାହିଁ ? ଭବିଷ୍ୟ ବିଶ୍ୱଯୁଦ୍ଧର ପ୍ରସ୍ତୁତି ପାଇଁ ନେହେରୁ ସରକାର କଣ ଦାୟିତ୍ୱ ନେଇଛି ? ଏହି ପ୍ରଶ୍ନଗୁଡ଼ିକର ମୀମାଂସା କରିବାକୁ ହେଲେ ପ୍ରଥମେ ଜାଣି ରଖିବାକୁ ହେବ, ନେହେରୁ ସରକାର ଭାରତବର୍ଷର ଜାତୀୟ ପୁଞ୍ଜିପତି ଶ୍ରେଣୀର ପ୍ରତିନିଧି । ବୃହତ୍ତର ସ୍ୱାର୍ଥ ଦୃଷ୍ଟିରୁ ଇଙ୍ଗ-ମାର୍କିନ ପୁଞ୍ଜିବାଦ ସହ ଭାରତୀୟ ପୁଞ୍ଜିବାଦର ମୌଳିକ ପାର୍ଥକ୍ୟ ନାହିଁ । ଜନସାଧାରଣଙ୍କୁ ଶୋଷଣ କରି ମୁନାଫା ଲୁଣ୍ଠନ କରିବା ଏବଂ କମ୍ୟୁନିଜିମର ପ୍ରସାରକୁ ରୋକିବା ପ୍ରଶ୍ନରେ ଦୁଇପକ୍ଷ ଏକମତ । ଏଣୁ ନେହେରୁ ସରକାର ମାର୍କିନ ସାମ୍ରାଜ୍ୟବାଦର ଶତ୍ରୁ ନୁହେଁ । କିନ୍ତୁ ଭାରତୀୟ ପୁଞ୍ଜିପତି ଶ୍ରେଣୀ ପ୍ରଚୁର ମୁନାଫା ପାଇଁ ସ୍ୱାଧୀନ-ଭାବେ ବ୍ୟବସାୟ କରିବାର ପକ୍ଷପାତୀ, ଏବଂ ମାର୍କିନ ପୁଞ୍ଜିର ଦାସତ୍ୱ ସ୍ୱୀକାର କରିବାପାଇଁ ଅନିଚ୍ଛୁକ । ଏହି ଦିଗରୁ ବିଚାର କଲେ ସର୍ବଗ୍ରାସୀ ମାର୍କିନ ପୁଞ୍ଜି ସହ ଭାରତୀୟ ଏକଚୁଟିଆ ପୁଞ୍ଜିର ସ୍ୱାର୍ଥ ବିରୋଧ ରହିଛି । ଏଣୁ ନେହେରୁ ମୂଳ ପ୍ରଶ୍ନଗୁଡ଼ିକରେ ସାମ୍ରାଜ୍ୟବାଦର ଦାବୀକୁ ପୂରଣ କରୁଥିଲେ ମଧ୍ୟ ତାଙ୍କୁ ସାମ୍ରାଜ୍ୟ-ବାଦର ପକ୍ଷ କୁଣ୍ଢେଇ କହିବା ଭୁଲ ହେବ । ନେହେରୁ ସରକାରର ବୈଦେଶିକ ନୀତି, ମାର୍କିନ ସାମ୍ରାଜ୍ୟବାଦକୁ ମୂଳ ପ୍ରଶ୍ନରେ ଯେପରି ସନ୍ତୁଷ୍ଟ କରେ ଆନ୍ତର୍ଜାତିକ କ୍ଷେତ୍ରରେ ସମୟ ସମୟରେ ତାଂର ବିରୋଧୀତା କରେ । ଏ କ୍ଷେତ୍ରରେ ବ୍ରିଟେନର ପରରାଷ୍ଟ୍ର ନୀତି ସହ ନେହେରୁ ନୀତିର ସାମଞ୍ଜସ୍ୟ ରହିଛି । କମନ୍‌ଓ୍ୱେଲଥ ଭୁକ୍ତ ଦେଶ ହିସାବରେ ଭାରତବର୍ଷ ଗ୍ରେଟ ବ୍ରିଟେନର ପରମ ବନ୍ଧୁ । ନେହେରୁ ସରକାର ନିକଟରେ ଦେଶୀ ପୁଞ୍ଜିର ସ୍ୱାର୍ଥ ପ୍ରଥମ, ତାଂ ପରେ ବ୍ରିଟିଶ

ପୁଞ୍ଜିର ସ୍ୱାର୍ଥ । ଇଙ୍ଗ-ମାର୍କିନ ପ୍ରତିଯୋଗିତାରେ ଭାରତବର୍ଷ ବ୍ରିଟେନ୍ ପକ୍ଷରେ । କିନ୍ତୁ ନେହେରୁ ସରକାରଙ୍କୁ ବ୍ରିଟିଶ ସାମ୍ରାଜ୍ୟବାଦର ପକ୍ଷ କୁଣ୍ଢେଇ କହିବା ମଧ୍ୟ ଭୁଲ । ରାଜନୈତିକ ଜଗତରେ ପଣ୍ଡିତ ନେହେରୁ ଭାରତୀୟ ପୁଞ୍ଜିପତି ଶ୍ରେଣୀର ଆଶା ଓ ଆକାଂକ୍ଷାର ପ୍ରତୀକ । ସେଥିପାଇଁ କେବଳ ମାର୍କିନ ସାମ୍ରାଜ୍ୟବାଦ ନୁହେଁ, ଭାରତୀୟ ପୁଞ୍ଜିର ସ୍ୱାର୍ଥ ଦୃଷ୍ଟିରୁ ତାଙ୍କୁ ଆଜି ସମଗ୍ର ପାଶ୍ଚାତ୍ୟ ସାମ୍ରାଜ୍ୟବାଦ ବିରୁଦ୍ଧରେ ଏବଂ ସାରା ଏସିଆର ମୁକ୍ତିପାଇଁ ସ୍ୱର ଉଠାଇବାକୁ ପଡୁଛି । ଏହାଦ୍ୱାରା ଅନେକ ଧାରଣା କରନ୍ତି ଯେ ପଣ୍ଡିତ ନେହେରୁ ଶାନ୍ତି-ବାଦୀ ଓ ପ୍ରଗତିଶୀଳ । କିନ୍ତୁ ଏହା ସମ୍ପୂର୍ଣ୍ଣ ଭୁଲ ଧାରଣା । ପୁଞ୍ଜିବାଦ ମଧ୍ୟରେ ଅନ୍ତର୍ବିରୋଧ ଅନିବାର୍ଯ୍ୟ । ଏମାନେ କେହି କାହାର ବନ୍ଧୁ ନୁହନ୍ତି । ବନ୍ଧୁତ୍ୱ କେବଳ ପୁଞ୍ଜିବାଦର ସାଧାରଣ ଶତ୍ରୁ ବିରୁଦ୍ଧରେ । ନିଜ ପୁଞ୍ଜିର ସ୍ୱାର୍ଥ ପାଇଁ ଏମାନେ ପରସ୍ପର ମଧ୍ୟରେ ଯେପରି ଯୁଦ୍ଧ କରନ୍ତି, ସେହିପରି ଅଧିକ ମୁନାଫା ପାଇଁ ପୁଞ୍ଜିବାଦର ସାଧାରଣ ଶତ୍ରୁ ସମାଜବାଦୀ ଶିବିର ସହ ବନ୍ଧୁତ୍ୱ ମଧ୍ୟ ପ୍ରତିଷ୍ଠା କରନ୍ତି । ଉଦାହରଣ ସ୍ୱରୂପ—ଗତ ମହାଯୁଦ୍ଧ ଆରମ୍ଭରେ ନାଜି ଜର୍ମାନୀ ସହ ସୋଭିଏତ ରୁଷର ସାମରିକ ଅନାକ୍ରମଣ ଚୁକ୍ତି ଏବଂ ଯୁଦ୍ଧ ସମୟରେ ମାର୍କିନ ଓ ବ୍ରିଟିଶ ସାମ୍ରାଜ୍ୟବାଦ ସହ ସୋଭିଏତ ରୁଷର ବନ୍ଧୁତ୍ୱ-ଦ୍ୱାରା କିଏ ମନେ କରିବା ଠିକ୍ ହେବ ଯେ ଇଙ୍ଗ-ମାର୍କିନ ଗୋଷ୍ଠୀ କିମ୍ବା ହିଟଲର ପ୍ରକୃତ ଶାନ୍ତି ସପକ୍ଷରେ ଏବଂ ସୋଭିଏତର ବନ୍ଧୁ ? ଏପରି ଧାରଣା ସମ୍ପୂର୍ଣ୍ଣ ଅମୂଳକ ଓ ଅଜ୍ଞାନପ୍ରସୂତ । କମ୍ୟୁନିଷ୍ଟ ପାର୍ଟିର ନେତାମାନେ ନେହେରୁଙ୍କ ସ୍ତୁତିଗାନ କରି ଆଜି ପର୍ଯ୍ୟନ୍ତ ଯେତେ ବିବୃତି ଦେଲେଣି ତା ପ୍ରକାଶ କଲେ ଗୋଟିଏ ବିରାଟ ଗ୍ରନ୍ଥ ହେବ । ସେମାନେ ମନେକରନ୍ତି ଯେ କୋରିଆ, ଇଣ୍ଡୋଚୀନ ଓ ଜେନେଭା ସମ୍ମିଳନୀ ଇତ୍ୟାଦି ଆନ୍ତର୍ଜାତିକ ଘଟଣାଗୁଡ଼ିକରେ

ନେହେରୁ ସରକାରର ଶାନ୍ତିନୀତି ପ୍ରମାଣିତ ହୋଇଛି । ଜନ-ସାଧାରଣଙ୍କୁ ଏମାନେ ଉପଦେଶ ଦେଉଛନ୍ତି—ଯଦି ଦେଶକୁ ଭଲପାଅ, ତେବେ ନେହେରୁଙ୍କ ହାତ ମୁଠା ଶକ୍ତ କର । ଧନ୍ୟ ବନ୍ଧୁଗଣ ତୁମେ ! ନେହେରୁ ମାର୍କା ଜୟନ୍ତୀକା ମାରି ଆହୁରି ବନ୍ଧୁଣୀ ହୁଅ । ଏହାହିଁ କାମନା । କିନ୍ତୁ ଭାରତର ମୁକ୍ତିକାମୀ ଜନସାଧାରଣଙ୍କ ସମ୍ମୁଖରେ ନେହେରୁଙ୍କ ହାତ ମୁଠା ଶକ୍ତ କରିବା ନୁହେଁ, ନେହେରୁ ସରକାରର ଉଚ୍ଛେଦ ହେଉଛି ସବୁଠାରୁ ମୁଖ୍ୟ ପ୍ରଶ୍ନ । ଏହି ସରକାର ପ୍ରତି ଜନସାଧାରଣଙ୍କ ମନରେ ମୋହ ସୃଷ୍ଟି କରି ନୁହେଁ, ବରଂ ତାର ପ୍ରକୃତ ସ୍ୱରୂପ ସଂପର୍କରେ ଜନସାଧାରଣଙ୍କୁ ସଚେତନ କରିବା ଦ୍ୱାରା ମୁକ୍ତି ଆନ୍ଦୋଳନ ବଳିଷ୍ଠ ହେବ ଏବଂ ସର୍ବ ପୁଞ୍ଜିବାଦୀ ଶୋଷଣର ବିଲୋପ ସାଧନ ହେବ ।

ଆନ୍ତର୍ଜାତିକ କ୍ଷେତ୍ରରେ ନେହେରୁ ସରକାରର ତଥାକଥିତ ଶାନ୍ତିନୀତି ସଂକ୍ଷେପରେ ଆଲୋଚନା କରିବା ଦରକାର । ଏହି 'ଶାନ୍ତିନୀତି' ସାମ୍ରାଜ୍ୟବାଦିକୁ କପରି ପ୍ରତ୍ୟକ୍ଷ ଭାବେ ସନ୍ତୁଷ୍ଟ କରିଛି, ତାହା କେତେକ ଉଲ୍ଲେଖଯୋଗ୍ୟ ଆନ୍ତର୍ଜାତିକ ଘଟଣାରୁ ପ୍ରମାଣିତ ହୁଏ ।

**୧ । କୋରିଆ ଯୁଦ୍ଧ ବିରତି—**

୧୯୫୦ ମସିହାରେ ମାର୍କିନ ସାମ୍ରାଜ୍ୟବାଦୀମାନେ କୋରିଆକୁ କେନ୍ଦ୍ର କରି ସମଗ୍ର ଏସିଆରେ ଯୁଦ୍ଧର ରଙ୍ଗମଞ୍ଚ ତିଆରି କରିବା ଏବଂ ଚୀନର ଜନ ଗଣତାନ୍ତ୍ରିକ ରାଷ୍ଟ୍ରକୁ ଧ୍ୱଂସ କରିବା ଉଦ୍ଦେଶ୍ୟରେ ଯୁଦ୍ଧ ଅଭିଯାନ ଆରମ୍ଭ କରି ଶେଷରେ କୋରିଆ ଓ ଚୀନର ବିପ୍ଳବୀ ବାହିନୀ ନିକଟରେ ପରାଜୟ ସ୍ୱୀକାର କଲେ । ରକ୍ତପିପାସୁ ମାର୍କିନ ଦସ୍ୟୁମାନଙ୍କର ଏହି ଚକ୍ରାନ୍ତ ସାରା ଦୁନିଆରେ କାହାରିକୁ ଅଜଣା ନଥିଲା । କୋରିଆ ଯୁଦ୍ଧ ବିରତି ଓ

ବନ୍ଦୀ ବିନିମୟ ପ୍ରଶ୍ନ ନେଇ ସୋଭିଏତ ରୁଷ ପ୍ରସ୍ତାବ ଦେଲା ଯେ ଅବିଳମ୍ବେ ଯୁଦ୍ଧ ବନ୍ଦ କରାଯାଇ ବନ୍ଦୀ ସନ୍ଧିରେ ଯୁଦ୍ଧ ବନ୍ଦୀମାନଙ୍କୁ ଫେରାଇ ଦିଆଯାଉ । କିନ୍ତୁ ଇଙ୍ଗ-ମାର୍କିନ ଗୋଷ୍ଠୀ ଦେଖିଲେ ଯେ ଏ ପ୍ରଶ୍ନ ଯଦି ଶାନ୍ତିପୂର୍ଣ୍ଣ ଉପାୟରେ ନିଷ୍ପତ୍ତି ହୁଏ ତେବେ ଯୁଦ୍ଧ ବନ୍ଦ କରିବାକୁ ହେବ ଏବଂ କୋରିଆରେ ଯୁଦ୍ଧ ବନ୍ଦ ହେଲେ ମାର୍କିନ ବ୍ୟବସାୟ ଓ ବାଣିଜ୍ୟ କ୍ଷେତ୍ରରେ ସଙ୍କଟ ଦେଖାଦେବ ଏବଂ ପୂର୍ବ ଗୋଲାର୍ଦ୍ଧର ଏକ ଗୁରୁତ୍ୱପୂର୍ଣ୍ଣ ଅଞ୍ଚଳରେ ନିଜର ସାମରିକ ପରାଜୟ ସ୍ୱୀକାର କରିବାକୁ ହେବ । ଏହି ବ୍ୟତୀତ ଆଣବିକ ଓ ହାଇଡ୍ରୋଜେନ ବୋମାର ପରୀକ୍ଷା ପାଇଁ ଯେଉଁ ବିପୁଳ ପ୍ରାଣୀ ବାହିନୀ (ଯୁଦ୍ଧବନ୍ଦୀ)କୁ 'ହ୍ୟୁମ୍ୟାନ ଗିନିପିଗ୍' ରୂପେ ବ୍ୟବହାର କରିବାର କଳ୍ପନା ଥିଲା ତାହା ଧୂଳିସାତ ହୋଇଯିବ । ଏଣୁ ଆମେରିକା ସୋଭିଏତ ପ୍ରସ୍ତାବକୁ ନାକଚ କରି ଅନ୍ୟ ଏକ ବିରୁଦ୍ଧ ପ୍ରସ୍ତାବ ଆଗତ କଲା । ଅର୍ଥାତ୍ ଯୁଦ୍ଧବନ୍ଦୀମାନଙ୍କର ମତାମତ ବ୍ୟତୀତ ସେମାନଙ୍କୁ ନିଜ ଦେଶକୁ ପଠାହେବ ନାହିଁ । ବ୍ରିଟିଶ ସାମ୍ରାଜ୍ୟବାଦୀମାନେ ଏ କ୍ଷେତ୍ରରେ ଆମେରିକା ସହ ଏକମତ ହେଲେ ବି କୋରିଆରେ ମାର୍କିନ ସାମ୍ରାଜ୍ୟବାଦୀଙ୍କସହ ସେମାନଙ୍କ ସ୍ୱାର୍ଥରେ ସେତେ ସାମଞ୍ଜସ୍ୟ ନଥିଲା । ଏଣୁ ବ୍ରିଟେନ ପୂର୍ବାପର ଶାନ୍ତି ଚୁକ୍ତିକୁ ଅସ୍ୱୀକାର କରି ଯୁଦ୍ଧର ଦାୟିତ୍ୱ ବହନ କରିବା ପାଇଁ ପ୍ରସ୍ତୁତ ନଥିଲା । ସୋଭିଏତ ପ୍ରସ୍ତାବର ଆନ୍ତରିକତା ଓ ଯୌକ୍ତିକତା ସଂପର୍କରେ ତାହାର ସନ୍ଦେହ ନଥିଲା । କିନ୍ତୁ ଏପରି ଅବସ୍ଥାରେ ଭାରତବର୍ଷ ତା'ର ନିରପେକ୍ଷତା'ର ଅସଲ ରୂପ ପ୍ରକାଶ କଲା । ଭାରତବର୍ଷ ପକ୍ଷରୁ ଏକ ତୃତୀୟ ପ୍ରସ୍ତାବ ଆଗତ କରାଗଲା । ଏହାଦ୍ୱାରା ଗୋଟିଏ ଦିଗରେ ବ୍ରିଟେନର ସ୍ୱାର୍ଥ ରକ୍ଷା ଓ ଅପର ଦିଗରେ ମାର୍କିନ ପ୍ରସ୍ତାବର ମୌଳିକ ବିରୋଧୀତା ସତ୍ତ୍ୱେ ମୂଳ ପ୍ରଶ୍ନରେ ସନ୍ତୁଷ୍ଟ

କରାଗଲା । ଭାରତୀୟ ପ୍ରସ୍ତାବର ମୂଳ ବକ୍ତବ୍ୟ ଥିଲା - -ବାଧ୍ୟତା-
ମୂଳକ ବନ୍ଦୀ ବିନିମୟ ମାନବିକତା ବିରୋଧୀ । କିନ୍ତୁ ଯୁଦ୍ଧ ବନ୍ଦୀ
ବିନିମୟ ତତ୍ତ୍ୱାବଧାନକାରୀ କମିଟିର ଗଠନ ସମ୍ପର୍କରେ ଆମେରିକାର
ସନ୍ଦେହ ଥିଲା । ଏଣୁ ପ୍ରଥମେ କେତେକ ଆପତ୍ତି ଉଠିଲା । କିନ୍ତୁ
ଶେଷରେ, ଭାରତ କାନାଡା ବା ମାର୍କିନ ବ୍ଲକର କର୍ତ୍ତୃତ୍ୱରେ ଜଣେ
ମଧ୍ୟସ୍ଥ ନିଯୋଗ କରିବାର ବ୍ୟବସ୍ଥା ଫଳରେ ଆମେରିକାର
ମନ ମାନିଲା । ଅନ୍ୟ ଦିଗରେ ସୋଭିଏତର ବନ୍ଦୀମୁକ୍ତି ପ୍ରସ୍ତାବ ପ୍ରତି
କର୍ଣ୍ଣପାତ ନକରି ଆମ ଦେଶର ପତ୍ରିକାମାନେ ବଡ଼ ବଡ଼
ଅକ୍ଷରରେ ଛାପିଲେ ଯେ ବନ୍ଦୀ ମୁକ୍ତି ବ୍ୟାପାରରେ ଭଗିନର୍ଷ୍ଟଙ୍କ
ଦାବିକୁ ସଂଶୋଧିତ ଆକାରରେ ଗ୍ରହଣ କରାଗଲା । ଭାରତର
ଏତାଦୃଶ ମନୋଭାବର ପରିଚୟ ପାଇ ସୋଭିଏତ ଦୃଢ଼ଭାବରେ
ଭାରତର ଏହି ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କଲା ! ତତ୍‌କ୍ଷଣାତ୍ ପାଶ୍ଚାତ୍ୟ
ରାଷ୍ଟ୍ରମାନେ ନାଚି ଉଠି କହିଲେ ଯେ ସୋଭିଏତ ହିଁ ଯୁଦ୍ଧ ଚାହେଁ,
ଏପରିକି ଆମେରିକା ନିଜ ପ୍ରସ୍ତାବକୁ ପ୍ରତ୍ୟାହାର କରି ଭାରତୀୟ
ପ୍ରସ୍ତାବର ଆଲୋଚନା ପାଇଁ ସ୍ଥାନ ଛାଡ଼ିଦେଲା । ପେକିଂ ରେଡ଼ିଓ
ସେ ଦିନ ଦୃଢ଼ଭାବେ ଘୋଷଣା କଲା ଯେ ଭାରତ ବିବାଦର
ମଧ୍ୟସ୍ଥତା କରିବାକୁ ଆସି ଆମେରିକା ଶିବିରରେ ଭିଡ଼ିଗଲା ।
ଭାରତର ମୌଖିକ ସୋଭିଏତ-ପ୍ରୀତି ଓ ଚୀନ ପ୍ରତି ଅଖିମିଟିକା
ସହାନୁଭୂତି 'ନିରପେକ୍ଷତା' ର ମୁଖା ଖୋଲି ଦେଇଛି । ଯେଉଁ
କୋରିଆ ଯୁଦ୍ଧବନ୍ଦୀ ବିନିମୟର ଦାୟିତ୍ୱ ନେଇ ଭାରତ ଜଗତ-
ବ୍ୟାପୀ ବାହାବା ପାଇଲା ତା'ର ପରିଣତି ହେଲା ଆମର ଜେନେରାଲ୍
ଥିମାଇୟା (କମ୍ୟୁନିଷ୍ଟ ପାର୍ଟି ନେତା ସୁନ୍ଦରାୟାଙ୍କ ଭାଷାରେ)
୨୨୦୦୦ ଯୁଦ୍ଧବନ୍ଦୀଙ୍କୁ ରକ୍ତ ପିପାସୁ ମାର୍କିନ ସାମ୍ରାଜ୍ୟବାଦୀଙ୍କ
ହସ୍ତରେ ସମର୍ପଣ କରି ଦେଶର ମୁଖ ଉଜ୍ଜ୍ୱଳ କଲେ ।

## ୭ । ଜେନେଭା ସନ୍ଧି ଲଙ୍ଘନ—

୧୯୪୬ ମସିହା ମାର୍ଚ୍ଚ ୬ ତା ଓ ଡିସେମ୍ବର ୧୪ ରେ ସ୍ୱାକ୍ଷରିତ ଚୁକ୍ତି ଅନୁଯାୟୀ ଡା: ହୋ ଚି ମିନ ସରକାରକୁ ସ୍ୱୀକୃତି ପ୍ରଦାନ, ଇଣ୍ଡୋଚୀନରେ ଯୁଦ୍ଧ ବିରତି ଓ ଶାନ୍ତି ସ୍ଥାପନ ଇତ୍ୟାଦି ସର୍ତ୍ତଗୁଡ଼ିକୁ ଭଙ୍ଗ କରି ଫରାସୀ ସାମ୍ରାଜ୍ୟବାଦୀମାନେ ଭିଏତ-ନାମର ଜନଗଣତାନ୍ତ୍ରିକ ସରକାର ବିରୁଦ୍ଧରେ ଦୀର୍ଘ ଆଠ ବର୍ଷ ଧରି ଯୁଦ୍ଧ ଚଳାଇଛନ୍ତି ଏବଂ ଆନାମ ପ୍ରଦେଶର ଅତ୍ୟାଗୃସ୍ତ ସାମନ୍ତ 'ବାଓଦାଇ'କୁ ନେଇ ଗାଦିରେ ବସାଇଛନ୍ତି । ଏଥି ମଧ୍ୟରେ ଭିଏତମିନ ସରକାର ପକ୍ଷରୁ ଯୁଦ୍ଧ ବିରତି ଓ ଶାନ୍ତି ସ୍ଥାପନ ପାଇଁ ବହୁବାର ପ୍ରସ୍ତାବ ଆସିଛି, କିନ୍ତୁ ସାମ୍ରାଜ୍ୟବାଦୀମାନେ ତିଳେ ହେଲେ କର୍ଣ୍ଣପାତ କରିନାହାନ୍ତି ବରଂ ମାର୍କିନ ସାହାଯ୍ୟ ନେଇ ଫରାସୀ ସାମ୍ରାଜ୍ୟବାଦୀମାନେ ହୋ ଚି ମିନ ସରକାରକୁ ନିଶ୍ଚିହ୍ନ କରିବାର କଳ୍ପନା ରଖି ଅଗ୍ରେଇ ଚାଲିଥିଲେ । ୧୯୫୪ ମସିହାରେ ଏମାନଙ୍କର ସୁନେଲି ସ୍ୱପ୍ନ ଭାଙ୍ଗିଗଲା । ସେହି ବର୍ଷ ମେ ମାସରେ ସାମ୍ରାଜ୍ୟବାଦୀ ମାନଙ୍କର ଶକ୍ତିଶାଳୀ ଦୁର୍ଗ ଦିଏନ ବିଏନ ଫୁ'ର ପତନ ଏବଂ ଭିଏତମିନ ଗଣବାହିନୀର ବିଜୟ ସାମ୍ରାଜ୍ୟବାଦୀଙ୍କର ହୃତକଂପ ସୃଷ୍ଟି କଲା । କ୍ରମାଗତ ପରାଜୟ ଭିତରେ ଯୁଦ୍ଧକୁ ଚାଲୁ ରଖିବାପାଇଁ ଫରାସୀ ସାମ୍ରାଜ୍ୟବାଦୀମାନେ ପ୍ରସ୍ତୁତ ନଥିଲେ । ବରଂ ଏହାଦ୍ୱାରା ଲାଭ ଅପେକ୍ଷା କ୍ଷତିର ମାତ୍ରା ବହୁ ଗୁଣରେ ସହ୍ୟ କରିବାକୁ ହୋଇଛି ।

ପୂର୍ବ ନିର୍ଦ୍ଧାରିତ ଅନୁଯାୟୀ ୧୯୫୪ ମେ ମାସରେ ଜେନେଭା ସନ୍ଧିଳନୀରେ ଇଣ୍ଡୋଚୀନ ଯୁଦ୍ଧ ବିରତି ପ୍ରଶ୍ନ ନେଇ ଭିଏତମିନ ସରକାର ଓ ଫ୍ରାନ୍ସ ପକ୍ଷରୁ ଦୁଇଟି ପରସ୍ପର ବିରୋଧୀ ପ୍ରସ୍ତାବ

ଆସିଥିଲା । ଭିଏତମିନ ସରକାରର ମୂଳ ସର୍ତ୍ତ ଥିଲା (୧) ଇଣ୍ଡୋଚୀନର ପୂର୍ଣ୍ଣ ସ୍ୱାଧୀନତା (୨) ଲାଓସ, କାମ୍ବୋଡ଼ିଆ ଓ ଭିଏତନାମରୁ ସମସ୍ତ ବିଦେଶୀ ସୈନ୍ୟର ଅପସାରଣ (୩) ଏହି ତିନୋଟି ଦେଶରେ ସ୍ୱାଧୀନ ନିର୍ବାଚନ (୪) ଉଭୟ ପକ୍ଷରୁ ପ୍ରତିନିଧିନେଇ ନିର୍ବାଚନ କମିଟି ଗଠନ [୫] ଫ୍ରାନ୍ସର ସହ ସମ୍ପର୍କ ରକ୍ଷା କରିବା ବ୍ୟାପାରରେ ଭିଏତମିନ, ପ୍ୟାଥେଟ ଲାଓ ଓ କାମ୍ବୋଡ଼ିଆର ଘୋଷଣା (୬) ଭିଏତମିନର ସହାୟକାରୀମାନଙ୍କ ବିରୁଦ୍ଧରେ ସର୍ବପ୍ରକାର ଦମନ ନୀତିର ଅବସାନ (୭) ବନ୍ଦୀ ବିନିମୟ (୮) ଉପରୋକ୍ତ ସର୍ତ୍ତ ଗୁଡ଼ିକୁ ଭିତ୍ତି କରି ଯୁଦ୍ଧ ବିରତି । ଅପର ଦିଗରେ ଫ୍ରାନ୍ସର ପ୍ରସ୍ତାବ ଥିଲା--ଯୁଦ୍ଧ ବିରତି ପୂର୍ବରୁ ଭିଏତମିନମାନଙ୍କୁ ସମଗ୍ର ଲାଓସ, କାମ୍ବୋଡ଼ିଆ ଓ ଭିଏତନାମ ଗୁଡ଼ିକ ଉତ୍ତରକୁ ହଟିଯିବାକୁ ହେବ ଏବଂ ସମସ୍ତ ଅନିୟମିତ ସୈନ୍ୟମାନଙ୍କ (ଗରିଲା ବାହିନୀ) ହାତରୁ ଅସ୍ତ୍ରଶସ୍ତ୍ର କାଢ଼ି ନେବାକୁ ହେବ । ସାର କଥା ହେଉଛି, ଯୁଦ୍ଧକ୍ଷେତ୍ରରେ ଫ୍ରାନ୍ସ ଯାହା ହରାଇଛି ତାକୁ ପ୍ରଥମେ ଆଦାୟ କରିବାକୁ ହେବ । ଇଣ୍ଡୋଚୀନ ମାଟିରେ ଫ୍ରାନ୍ସର କୌଣସି ଅଧିକାର ନାହିଁ । ଏଣୁ ପ୍ରତ୍ୟେକ ଶାନ୍ତିକାମୀ ବ୍ୟକ୍ତି ଭିଏତମିନର ପ୍ରସ୍ତାବକୁ ଆନ୍ତରିକତା ସହ ସମର୍ଥନ କରିବେ । କିନ୍ତୁ ମାର୍କିନ ସାମ୍ରାଜ୍ୟବାଦୀମାନେ ଇଣ୍ଡୋଚୀନରେ ସାମରିକ ଘାଟି ସ୍ଥାପନ କରିବାର କଳ୍ପନା ରଖି ଯୁଦ୍ଧନିଆଁକୁ ତେଜି ରଖିବା ପାଇଁ ଫ୍ରାନ୍ସ ଉପରେ ବାରମ୍ବାର ଚାପ ଦେଲେ । ଅନ୍ୟ ଦିଗରେ ବ୍ରିଟିଶ ସାମ୍ରାଜ୍ୟବାଦୀଙ୍କର ଇଣ୍ଡୋଚୀନ କ୍ଷେତ୍ରରେ କୌଣସି ପ୍ରତ୍ୟକ୍ଷ ସ୍ୱାର୍ଥ ନଥିଲା । ଏଣୁ ଇଣ୍ଡୋଚୀନ ଯୁଦ୍ଧରେ ଆମେରିକା ଓ ଫ୍ରାନ୍ସକୁ ସାହାଯ୍ୟ ଦେବାପାଇଁ ବ୍ରିଟେନ ଅସ୍ୱୀକୃତ ହେଲା । ବ୍ରିଟିଶ ପ୍ରଧାନମନ୍ତ୍ରୀ ଚର୍ଚ୍ଚିଲ ସେତେବେଳେ କହିଥିଲେ—
"British Government is not prepared to give

any undertaking about United Kingdom military action in Indo-china in advance of the results of Geneva" (24th April 1954 in the House of Commons) ଅର୍ଥାତ୍ ଜେନେଭା ସମ୍ମିଳନୀର ଫଳାଫଳ ପୂର୍ବରୁ ବ୍ରିଟିଶ ସରକାର ଇଣ୍ଡୋଚୀନ ଯୁଦ୍ଧରେ କୌଣସି ଦାୟିତ୍ୱ ନେବା ପାଇଁ ପ୍ରସ୍ତୁତ ନୁହେଁ ।

ଏଥିରୁ ପ୍ରମାଣିତ ହେଉଛି ଯେ ଆନ୍ତର୍ଜାତିକ କ୍ଷେତ୍ରରେ ପୁଞ୍ଜି-ବାଦୀ ଗୋଷ୍ଠୀ ଆଭ୍ୟନ୍ତରୀଣ ଦ୍ୱନ୍ଦ୍ୱ ଫଳରେ ନିଜର ଯୁଦ୍ଧ ମେଣ୍ଟ ଗୁଡ଼ିକୁ ବଞ୍ଚାଇ ରଖିବା ଦିଗରେ ସକ୍ଷମ ହୋଇ ପାରୁନାହାନ୍ତି; ଏବଂ ପୁଞ୍ଜିବାଦର ସାମଗ୍ରିକ ସ୍ୱାର୍ଥ ବିପନ୍ନ ହେବା ଜାଣି ସୁଦ୍ଧା ନିଜ ମଧ୍ୟରେ ଐକ୍ୟ ପ୍ରତିଷ୍ଠା କରି ପାରୁନାହାନ୍ତି । ଏ ପରିସ୍ଥିତିରେ ଯେତେବେଳେ ସାମ୍ରାଜ୍ୟବାଦୀ ଯୁଦ୍ଧଖୋର ଶକ୍ତିକୁ ଆହୁରି ଦୁର୍ବଳ କରି ବିଶ୍ୱ ଶାନ୍ତି ଆନ୍ଦୋଳନକୁ ବ୍ୟାପକ ଓ ବଳିଷ୍ଠ କରିବା ଏବଂ ଭିଏତମିନ ମୁକ୍ତି ଆନ୍ଦୋଳନକୁ ପୂର୍ଣ୍ଣ ସମର୍ଥନ କରିବା ଏକମାତ୍ର କାମ୍ୟ, ସେତେବେଳେ ଶାନ୍ତିବାଦୀ(?)ନେହେରୁ ଏକ ଛଅଦଫା ପ୍ରସ୍ତାବ ଉପସ୍ଥାପିତ କଲେ । ଏ ପ୍ରସ୍ତାବ ଦ୍ୱାରା ମାର୍କିନ ସାମ୍ରାଜ୍ୟବାଦର ମୌଖିକ ବିରୋଧିତା କରାଯାଇ ବ୍ରିଟିଶ ନୀତିକୁ ଦୃଢ଼ଭାବେ ସମର୍ଥନ କରାଗଲା । ଭିଏତମିନ ପ୍ରସ୍ତାବକୁ ସିଧାସଳଖ ବିରୋଧ କରାନଯାଇ ନୂତନ ସମସ୍ୟା ସୃଷ୍ଟି କରାଗଲା ଏବଂ ଆଲୋଚନାକୁ ଆହୁରି ଗଣ୍ଡ-ଗୋଳିଆ କରିଦିଆଗଲା । ଛଅଦଫା ପ୍ରସ୍ତାବର ମୂଳକଥା—ପ୍ରଥମେ ଯୁଦ୍ଧ ବିରତି; ଦ୍ୱିତୀୟରେ ଯୋଉଏତ, ଚୀନ, ବ୍ରିଟେନ ଓ ଆମେରିକା ଏହି ଚାରି ଦେଶ ମଧ୍ୟରେ ଏପରି ଏକ ଚୁକ୍ତି ସଂପାଦିତ ହେବ, ଯହିଁରେ ଇଣ୍ଡୋଚୀନ କ୍ଷେତ୍ରରେ କେହି ହସ୍ତକ୍ଷେପ କରି ପାରିବେ ନାହିଁ । କିନ୍ତୁ ଇଣ୍ଡୋଚୀନ ମାଟିରୁ ଫରାସୀ ଓ ଅନ୍ୟାନ୍ୟ ସାମ୍ରାଜ୍ୟ-

ବାଦୀ ସୈନ୍ୟଙ୍କୁ ଅପସାରଣ କରଯିବ କି ନାହିଁ, ସେ ସଂପର୍କରେ କୌଣସି କଥା ରହିଲ ନାହିଁ। ଏହା ବ୍ୟତୀତ ବ୍ରିଟେନ ଓ ଆମେରିକା ସହ ଚୀନ ଓ ସୋଭିଏତର ଏପରି ଏକ ଚୁକ୍ତି କରିବାକୁ କୁହାଗଲ, ଯହିଁରେ ପରିଷ୍କାର ଜଣାପଡ଼ିଲା ଯେ ଏହି ଚାରିଜଣ ବୋଧହୁଏ ପ୍ରକୃତରେ ଇଣ୍ଡୋଚୀନ ଯୁଦ୍ଧ ପାଇଁ ସମାନ ଭାବରେ ଦାୟୀ। କି ସୁନ୍ଦର ଶାନ୍ତି ନୀତି !

# ପାକ ମାର୍କିନ ସାମରିକ ଚୁକ୍ତି

ବିଶ୍ୱଯୁଦ୍ଧର ପ୍ରସ୍ତୁତି, ବିଭିନ୍ନ ପୁଞ୍ଜିବାଦୀ ଦେଶ ସହ ସାମରିକ ଚୁକ୍ତି ଓ ମୈତ୍ରୀ ଏବଂ ଋଷ ଓ ଚୀନର ନିକଟବର୍ତ୍ତୀ ଦେଶମାନଙ୍କରେ ଯୁଦ୍ଧ ଘାଟି ସ୍ଥାପନ କରିବା ପାଇଁ ମାର୍କିନ ସାମ୍ରାଜ୍ୟବାଦୀମାନେ ବହୁଦିନରୁ ଚକ୍ରାନ୍ତ ଚଳାଇଛନ୍ତି। ଏହି ଚକ୍ରାନ୍ତକୁ ଫଳବତୀ କରିବା ଦିଗରେ ପାକ ମାର୍କିନ ସାମରିକ ଚୁକ୍ତି ଅନ୍ୟ ଏକ ପଦକ୍ଷେପ। ସୋଭିଏତ ଓ ଚୀନକୁ ଧ୍ୱଂସ କରିବା ଏବଂ ବିଶ୍ୱଶାନ୍ତିକୁ ବିପନ୍ନ କରିବା ଏହି ଚୁକ୍ତିର ଅସଲ ଲକ୍ଷ୍ୟ। ପାକିସ୍ଥାନ ଓ ଭାରତୀୟ ଜନସାଧାରଣଙ୍କ ପକ୍ଷରେ ଏହା କେବଳ ଦୃଶ୍ୟ ନୁହେଁ ବିପଜ୍ଜନକ ମଧ୍ୟ। ଏହି ଆନ୍ତର୍ଜାତିକ ଷଡ଼ଯନ୍ତ୍ରର ପ୍ରତିରୋଧ ପାଇଁ ଯେପରି ବ୍ୟାପକ ଗଣ ଆନ୍ଦୋଳନ ଗଢ଼ି ତୋଳିବାକୁ ହେବ ସେହିପରି ଅନ୍ୟ ଦିଗରେ ପାକିସ୍ଥାନ ଓ ଭାରତର ପୁଞ୍ଜିବାଦୀ ଶାସକ ଗୋଷ୍ଠୀର ସାମ୍ରାଜ୍ୟବାଦୀ ତୋଷଣ ନୀତିକୁ ପରାସ୍ତ କରିବାକୁ ହେବ। ଆଜି ଭାରତୀୟ ଜନସାଧାରଣଙ୍କ ସହ ସ୍ୱର ମିଳାଇ ନେହେରୁ ସରକାର ଏହି ସାମରିକ ଚୁକ୍ତିର ପ୍ରତିବାଦ କରିବାର ଅର୍ଥ ଓ ଉଦ୍ଦେଶ୍ୟ ସମାନ କି ନୁହେଁ କିମ୍ବା ପାର୍ଥକ୍ୟ ଅଛି ତାହା ବିଶେଷ ପ୍ରଣିଧାନଯୋଗ୍ୟ।

ପାକ-ମାର୍କିନ ସାମରିକ ଚୁକ୍ତି ବିରୁଦ୍ଧରେ ନେହେରୁ ସରକାର ପକ୍ଷରୁ ଧ୍ୱନି ଉଠୁଛି ଯେ ଜାତୀୟ ସ୍ୱାଧୀନତା ଓ ଐକ୍ୟ ବିପନ୍ନ । ନେହେରୁଙ୍କ ମତରେ,"**India is endangered by U.S.-Pak Military pact'** କମ୍ୟୁନିଷ୍ଟ ପାର୍ଟି ପ୍ରଭୃତି କେତେକ ଦଳ ଏହି ଜାତୀୟ ସଂକଟ [?] ବେଳେ "ମହାନ ନେହେରୁଜୀ" ଙ୍କ ପଛରେ ସଙ୍ଘବଦ୍ଧ ଭାବେ ଦଣ୍ଡାୟମାନ ହେବା ପାଇଁ ଜନସାଧାରଣଙ୍କୁ ଆହ୍ୱାନ କରିଛନ୍ତି । କମ୍ୟୁନିଷ୍ଟ ପାର୍ଟିରେ ପାର୍ଲିଆମେଣ୍ଟାରି ନେତା ପି, ସୁନ୍ଦରାୟା ସେତେବେଳେ କହିଥିଲେ, **In this connection Sir, our party takes the earliest opportunity of offering its whole hearted support to the statement which our prime minister Mr. Nehru made ... ... ...Sir, we welcom the statement (New Age March 14, 1954 )** ଅର୍ଥାତ ଆମର ପ୍ରଧାନମନ୍ତ୍ରୀ ନେହେରୁ ଏ ସମ୍ପର୍କରେ ଯେଉଁ ବିବୃତି ଦେଇଛନ୍ତି ଆମର ପାର୍ଟି ତାଙ୍କୁ ଆନ୍ତରିକ ସମର୍ଥନ ଜଣାଉଛି ।

ବର୍ତ୍ତମାନ ଏ ଚୁକ୍ତି ଫଳରେ ଭାରତକୁ ଆକ୍ରମଣ କରିବାର ପ୍ରଶ୍ନ କେଉଁଠି ରହିଲା ତା ବିଚାର କରିବାର କଥା । ଭାରତକୁ ଆକ୍ରମଣ କରିବା ଆମେରିକାର ଉଦ୍ଦେଶ୍ୟ ନୁହେଁ; ବରଂ ସୋଭିଏତ ବିରୋଧୀ ଯୁଦ୍ଧରେ ଭାରତକୁ ବନ୍ଧୁ ହିସାବରେ ପାଇବା ପାଇଁ ଆମେରିକା ବ୍ୟାକୁଳ । ପୁନଶ୍ଚ ଆମେରିକାଙ୍କର ସମ୍ମତି ବିନା ପାକିସ୍ଥାନ ପକ୍ଷରେ ଭାରତ ଆକ୍ରମଣ କରିବାର କଳ୍ପନା ସଂପୂର୍ଣ୍ଣ ଅମୂଳକ, ଅବାସ୍ତବ । ପାକିସ୍ଥାନ ଭାରତ ବିରୁଦ୍ଧରେ ଯୁଦ୍ଧଘୋଷଣା କରିବ ବୋଲି ଯେଉଁମାନେ ବିଶ୍ୱାସ କରୁଛନ୍ତି ସେମାନଙ୍କୁ ପାଗଳ ବ୍ୟତୀତ ଅନ୍ୟ କିଛି କୁହାଯିବ ନାହିଁ ।

ଭାରତର ସ୍ୱାଧୀନତାରକ୍ଷା ପାଇଁ ନେହେରୁ ସରକାର ଏତେ ବ୍ୟଗ୍ର କାହିଁକି ? ଯେଉଁ ସରକାର ମାର୍କିନ ସାମ୍ରାଜ୍ୟବାଦୀମାନଙ୍କୁ ଆମ ଦେଶର ଜନସାଧାରଣଙ୍କ ରକ୍ତ ଉପରେ ଚଢି ଶୋଷଣ କରିବାର ପୂର୍ଣ୍ଣ ସ୍ୱାଧୀନତା ଦେଇଛନ୍ତି ଏବଂ ଦେଶର ଜନସାଧାରଣଙ୍କ ପ୍ରବଳ ବିରୋଧ ସତ୍ତ୍ୱେ ଘନ୍ଟାଘଡି ସଂବିଧାନ ସଂଶୋଧନ କରି ଭାରତର ବେରୁବାଡ଼ି ଥାନାକୁ ପାକିସ୍ଥାନର ନରହନ୍ତା ଆୟୁବଖାଁଙ୍କୁ ଯୌତୁକ ସ୍ୱରୂପ ଦେଇଛନ୍ତି ; ସେ ସରକାର କପରି ଦେଶପ୍ରେମୀ ବୁଝିବା କଠିନ ଏଣୁ ଦେଶ ଯଦି ବିପନ୍ନ ହୁଏ, ତାହେଲେ ଦେଶରକ୍ଷା ଓ ସ୍ୱାଧୀନତା ଅର୍ଜ୍ଜନ କରିବାର ଦାୟିତ୍ୱ ଜନସାଧାରଣଙ୍କର ବଳିଷ୍ଠ ନେତୃତ୍ୱ ଗ୍ରହଣ କରିବ । ପୁଞ୍ଜିବାଦୀ ନେହେରୁ ସରକାର କେବେହେଲେ ଜନସାଧାରଣଙ୍କୁ ନେତୃତ୍ୱ ଦେଇ ନ ପାରେ ।

ସୋଭିଏତ-ବିରୋଧୀ ଯୁଦ୍ଧ ପ୍ରସ୍ତୁତିକୁ ଜୋରଦାର କରିବା ଏହି ସାମରିକ ଚୁକ୍ତିର ଉଦ୍ଦେଶ୍ୟ । ଭାରତକୁ ଆକ୍ରମଣ କରିବା ପ୍ରଶ୍ନ ସମ୍ପୂର୍ଣ୍ଣ ଅବାନ୍ତର । ଏ ପ୍ରସଙ୍ଗରେ ପାକ-ମାର୍କିନ ସାମରିକ ଚୁକ୍ତିର ଅନ୍ୟତମ ପୁରୋଧା "ମେଲ୍‌ଭଇନ୍ ଲର୍ଡ" ନିଜେ ଦିଲ୍ଲୀ ଆସି ନେହେରୁଙ୍କୁ ଆଶ୍ୱାସନା ବାଣୀ ଶୁଣାଇଛନ୍ତି—

1. **The military aid to Pakistan is being earmarked for use only against communist aggression.**

2. **Anglo-American Powers will continue to retain Pakistan in its anger towards India**

ଅର୍ଥାତ୍ ୧ । କମ୍ୟୁନିଷ୍ଟ ଆକ୍ରମଣକୁ ପ୍ରତିହତ କରିବା ପାଇଁ ପାକିସ୍ଥାନକୁ ସାମରିକ ସାହାଯ୍ୟ ଦିଆଯାଉଛି

୨ । ପାକିସ୍ଥାନ ଯେପରି ଭାରତ ଉପରେ ବେଶି ନଚଢ଼ିଏ ସେଥିପାଇଁ ଇଙ୍ଗ-ମାର୍କିନ ଶକ୍ତି ଯଥାସାଧ୍ୟ ଚେଷ୍ଟା କରିବେ ।

**Talk between Nehru ard Selwyn LLoyd, Britain's Foreign Secretary on 3 3 56 )**

ଏ କଥା କଣ ନେହେରୁ ବୁଝି ନାହାନ୍ତି ? ତେବେ ଏ ପ୍ରତାରଣା କାହିଁକି ? ଏ ଛଳନାତ୍ମକ ଦେଶ ପ୍ରେମର ଉଦ୍ଦେଶ୍ୟ କଣ ? ଏକଥା ନିଶ୍ଚିତ ଯେ ଆଜି କ୍ଷୟିଷ୍ଣୁ ଧନତାନ୍ତ୍ରିକ ଯୁଗରେ କୌଣସି ଦେଶରେ ପୁଞ୍ଜିପତିଶ୍ରେଣୀ ଜାତୀୟ ସାର୍ବଭୌମତ୍ୱ ରକ୍ଷା କରି ନପାରେ । କେବଳ ଶ୍ରମିକ ଶ୍ରେଣୀର ନେତୃତ୍ୱ ଜାତୀୟ ଐକ୍ୟ ପ୍ରତିଷ୍ଠା କରିପାରେ । ପଣ୍ଡିତ ନେହେରୁ କେବେହେଲେ ଶ୍ରମିକଶ୍ରେଣୀର ପ୍ରତିନିଧି ନୁହନ୍ତି । ତେବେ ଭାରତୀୟ ପୁଞ୍ଜିପତି ଶ୍ରେଣୀର ସ୍ୱାର୍ଥ ନେହେରୁଙ୍କ ଏହି ଉଦ୍ଦେଶ୍ୟ ସହ ସମ୍ପୃକ୍ତ ଭାବେ ଜଡ଼ିତ । ପ୍ରଥମତଃ ପାକିସ୍ଥାନ କଶ୍ମିର କାଳ୍ପନିକ ଭୟ ଦେଖାଇ ଭାରତର ସାମରିକ ଶକ୍ତି ବୃଦ୍ଧି କରିବା ଏବଂ ଦ୍ୱିତୀୟତଃ ଭାରତର ଶୋଷିତ ଜନସାଧାରଣଙ୍କ କ୍ରମବର୍ଦ୍ଧମାନ ଆନ୍ଦୋଳନକୁ ଦମନ କରିବା ପାଇଁ ଉକ୍ତ ସାମରିକ ଶକ୍ତିକୁ ପ୍ରୟୋଗ କରିବା । ଜନସାଧାରଣଙ୍କ ଖାଦ୍ୟ, ଶିକ୍ଷା, ସ୍ୱାସ୍ଥ୍ୟ ଆଦି ବଡ଼ବଡ଼ ସମସ୍ୟାର ସମାଧାନ ନକରି ବନ୍ଧୁକ; କମାଣ ଓ ବାରୁଦ ତିଆରିରେ ଅଧିକରୁ ଅଧିକତର ଅର୍ଥବ୍ୟୟ କରାଯାଉଛି । କେନ୍ଦ୍ରୀୟ ସରକାରର ମୋଟ ୪୭୦ କୋଟି ଟଙ୍କାର ବଜେଟମଧ୍ୟରୁ ୧୯୫୪ ମସିହାରେ ସାମରିକ ବିଭାଗରେ ୨୦୭ କୋଟି ଟଙ୍କା ବରାଦ କରାଯାଇଥିଲା । ଅର୍ଥାତ୍ ପୂର୍ବ ବର୍ଷ ତୁଳନାରେ ପ୍ରାୟ ସାତେ ୯ କୋଟି ଟଙ୍କା ଅଧିକ । ୧୯୫୭-୫୮ ମସିହାରେ ଏହି ଖରଚ ବୃଦ୍ଧି ପାଇ ୨୫୨·୬୧ କୋଟି ଟଙ୍କାକୁ ଉଠିଲା ଏବଂ ୧୯୫୯-୬୦ ମସିହାରେ ୨୬୫·୪୨ କୋଟି ଟଙ୍କାକୁ

ଆସିଲାଣି । ଏହା ନିଃସନ୍ଦେହ ଯେ ଏହି ଅସ୍ତ୍ର ଶସ୍ତ୍ର ଭାରତବର୍ଷର ଶ୍ରମିକ, କୃଷୀ ଜନସାଧାରଣଙ୍କ ବୈପ୍ଳବୀ ଆନ୍ଦୋଳନକୁ ଦମନ କରିବା ପାଇଁ ଉପ୍ତାଦନ କରାଯାଉଛି । ଦୀର୍ଘ ୨୪ ବର୍ଷର କଂଗ୍ରେସୀ ଶାସନ ଏହି ନୃଶଂସ ଦମନଲୀଳାର ଜ୍ୱଳନ୍ତ ସାକ୍ଷ୍ୟ ବହନ କରେ ।

ଅନ୍ୟ ଏକ ଦିଗରୁ ସାମରିକ ଶକ୍ତି ବୃଦ୍ଧି କରିବାର କାରଣ ହେଉଛି ଆନ୍ତର୍ଜାତିକ କ୍ଷେତ୍ରରେ ଦର କଷାକଷି ଓ ବଜାର ପ୍ରତି-ଯୋଗିତାର କ୍ଷେତ୍ର ସୁଗମ କରିବା । ଉନ୍ନତ ସାମରିକ ଶକ୍ତି ବିନା ଆନ୍ତର୍ଜାତିକ ଘଟଣାବଳୀକୁ ନିଜର ସୁବିଧା ଅନୁଯାୟୀ ପ୍ରଭାବିତ କରିବା ସମ୍ଭବ ନୁହେଁ । ଏହି ଦୃଷ୍ଟି କୋଣରୁ ଆଜି ପୁଞ୍ଜିବାଦୀ ଦେଶମାନେ ନିଜର ସାମରିକ ବଜେଟକୁ ବୃଦ୍ଧି କରିବାରେ ଲାଗିଛନ୍ତି । ନେହେରୁ ସରକାର ପାଇଁ ପାକ-ମାର୍କିନ ସାମରିକ ଚୁକ୍ତି ସେହି ସୁବର୍ଣ୍ଣ ସୁଯୋଗ ଆଣି ଦେଇଛି । ଏହି ଅବସରରେ ନେହେରୁ ସରକାର ନିଜର ପ୍ରକୃତ ଉଦ୍ଦେଶ୍ୟକୁ ଚରିତାର୍ଥ କରିବା ସଙ୍ଗେ ସଙ୍ଗେ ଚୁକ୍ତିର ବିରୋଧୀତା କରି ନିଜକୁ ତଥାକଥିତ ଶାନ୍ତିବାଦୀ ଓ ଦେଶ ପ୍ରେମୀ ବୋଲି ଘୋଷଣ କରିଛି ।

## ବାନ୍ଦୁଂ ସମ୍ମିଳନୀ

କଲମ୍ବୋ ପଞ୍ଚଶକ୍ତି ଉଦ୍ୟମରେ ଏଶିଆ ଓ ଆଫ୍ରିକାର ୨୯ଟି ଦେଶର ମହା ସମ୍ମିଳନୀ ୧୯୫୫, ୧୮ ଏପ୍ରେଲଠାରୁ ୨୪ ଅପ୍ରେଲ ପର୍ଯ୍ୟନ୍ତ ଇଣ୍ଡୋନେସିଆର ବାନ୍ଦୁଂ ସହରରେ ଅନୁଷ୍ଠିତ ହୋଇଥିଲା । ଏହି ସମ୍ମିଳନୀରେ ଗୃହୀତ ହୋଇଥିବା ପ୍ରସ୍ତାବ ଗୁଡିକର ବିଶଦ ଆଲୋଚନା ହେବା ପୂର୍ବରୁ ଏକଥା ନିଶ୍ଚିତ ଭାବେ କୁହାଯାଇପାରେ ଯେ ବାନ୍ଦୁଂ ସମ୍ମିଳନୀ ଇଙ୍ଗ-ମାର୍କିନ ଯୁଦ୍ଧ ଉଦ୍ୟମରେ ପ୍ରତିବନ୍ଧକ ସୃଷ୍ଟି କରିବାରେ ସାହାଯ୍ୟ କରିଛି, ଏବଂ ସମାଜବାଦୀ ଶିବିର

ନେତୃତ୍ୱରେ ବିଶ୍ୱବ୍ୟାପୀ ଶାନ୍ତି ଆନ୍ଦୋଳନକୁ ସହାୟତା କରୁଛି । କିନ୍ତୁ ଉକ୍ତ ସମ୍ମିଳନୀର ସାଫଲ୍ୟରେ ମୁଗ୍ଧ ହୋଇ, କର୍ତ୍ତବ୍ୟ ଏତିକରେ ଶେଷକଲେ ତାହା ବିଚାର-ନିରପେକ୍ଷ ହେବ ନାହିଁ । ଏଣୁ ବିସ୍ତୃତ ଆଲୋଚନା ଏକାନ୍ତ ଅପରିହାର୍ଯ୍ୟ । ଯୋଗଦାନକାରୀ ଦେଶମାନଙ୍କ ମଧ୍ୟରୁ ଚୀନ ଓ ଉ:ଭିଏତନାମ ସମାଜବାଦୀ ଦେଶ—ଯେଉଁମାନଙ୍କର ଲକ୍ଷ୍ୟ—ସାମ୍ରାଜ୍ୟବାଦୀ ଶୋଷଣ କବଳରୁ ଜନସାଧାରଣଙ୍କର ମୁକ୍ତି ଏବଂ ବିଶ୍ୱରେ ସ୍ଥାୟୀ ଶାନ୍ତି ପ୍ରତିଷ୍ଠା । ଏଣୁ ଏ ଦୁଇ ଦେଶର ଯୋଗଦାନ ବିଶ୍ୱ ଶାନ୍ତି ଆନ୍ଦୋଳନକୁ ବ୍ୟାପକ ଓ ବଳିଷ୍ଠ କରିବା ପାଇଁ ସମ୍ପୂର୍ଣ୍ଣ ଭାବେ ଉଦ୍ଦିଷ୍ଟ । ଏମାନଙ୍କ ବ୍ୟତୀତ ଅନ୍ୟ ଯୋଗଦାନକାରୀ ଦେଶମାନେ ହେଉଛନ୍ତି ପୁଞ୍ଜିବାଦୀ ଓ ଅର୍ଦ୍ଧପୁଞ୍ଜିବାଦୀ ଦେଶ, ଯେଉଁମାନଙ୍କ ମଧ୍ୟରୁ କେତେକ ଅପେକ୍ଷାକୃତ ଶିଳ୍ପୋନ୍ନତ ଓ କେତେକ ଅନୁନ୍ନତ, ବିଶେଷତଃ ଔପନିବେଶିକ ଅର୍ଥନୀତି ଦ୍ୱାରା ନିୟନ୍ତ୍ରିତ । ବାନ୍ଦୁଂ ସମ୍ମିଳନୀରେ ଯୋଗଦାନ ଦେଇଥିବା ପୁଞ୍ଜିବାଦୀ ଓ ଅର୍ଦ୍ଧପୁଞ୍ଜିବାଦୀ ଦେଶମାନଙ୍କ ମଧ୍ୟରେ ପ୍ରଥମେ ଏହି ଅର୍ଥନୈତିକ ତାରତମ୍ୟ ପରିଲକ୍ଷିତ ହୁଏ । ଏଣୁ ଏଠାରେ ବିଚାର୍ଯ୍ୟ ଚୀନ ଓ ଭିଏତନାମ ବ୍ୟତୀତ ଅନ୍ୟ ଦେଶମାନଙ୍କର ସମ୍ମିଳନୀରେ ଯୋଗଦାନ ଦେବାର କାରଣ ଓ ଉଦ୍ଦେଶ୍ୟ କଣ ।

ଉପରୋକ୍ତ ପୁଞ୍ଜିବାଦୀ ଦେଶମାନଙ୍କ ମଧ୍ୟରୁ ଯେଉଁମାନେ ଉନ୍ନତ ଆଜି ସେମାନଙ୍କ ସମ୍ମୁଖରେ ବଜାର ସମସ୍ୟା ଉତ୍କଟ ଆକାର ଧାରଣ କରୁଛି । ପୁଞ୍ଜିବାଦୀ ବ୍ୟବସ୍ଥାକୁ ଅକ୍ଷୁର୍ଣ୍ଣ ରଖି ଦେଶରେ ଶିଳ୍ପୋନ୍ନତି ସାଧନ କରିବାକୁ ହେଲେ ବଜାର ସଙ୍କଟ ଦେଖାଦେବା ସୁନିଶ୍ଚିତ । କିନ୍ତୁ ସେ ସଙ୍କଟକୁ ଏଡ଼ିବା ପାଇଁ ପଚିଶ ବରଷ ତଳର ଅଖଣ୍ଡ ବିଶ୍ୱରେ ପୁଞ୍ଜିବାଦୀ ରାଷ୍ଟ୍ରମାନେ ଦେଖନ୍ତି ଯୁଦ୍ଧକୁ ଏକମାତ୍ର

ସହଜ ପନ୍ଥା ରୂପେ ବାଛି ନେଇଥିଲେ ଆଜି ଅର୍ଦ୍ଧଶତାବ୍ଦୀ ପରେ ବଜାର ସଂକଟ ପୂର୍ବାପେକ୍ଷା ଅଧିକ ତୀବ୍ରତର ହୋଇଥିଲେ ମଧ୍ୟ ଯୁଦ୍ଧ ନିଆଁରେ ଝାସଦେବା ପୂର୍ବରୁ ଏହି ଯୁଦ୍ଧଖୋରମାନେ ନିଜର ଅବଶ୍ୟମ୍ଭାବୀ ପରିଣତି ସମ୍ପର୍କରେ ସାମାନ୍ୟ ଚିନ୍ତାକରୁଛନ୍ତି । ଆଜି ସାମ୍ରାଜ୍ୟବାଦୀମାନଙ୍କର ଆଉ ଅଖଣ୍ଡବଶ୍ୱ ନାହିଁ—ସମାଜବାଦୀ ଶିବିରର ଅଭ୍ୟୁତ୍‌ଥାନ, ଦୁନିଆରେ ନୂତନ ଭାରସାମ୍ୟ ସୃଷ୍ଟି କରିଛି । ଏଣୁ ଏ ପ୍ରକାର ସଂକଟମୟ ପରିସ୍ଥିତିରେ ସଂପ୍ରତି ସ୍ୱାଧୀନତା ପାଇଥିବା ଏଶିଆ ଓ ଆଫ୍ରିକାର ପୁଞ୍ଜିବାଦୀ ଦେଶ-ଗୁଡ଼ିକ ନିଜର ନଗଣ୍ୟ ଶକ୍ତିନେଇ ଯୁଦ୍ଧପନ୍ଥାରେ ବଜାର ସଂକଟ ସମାଧାନ କରିବା କଳ୍ପନାତୀତ । ଫଳତଃ ଗୋଟିଏ ଦିଗରେ ସମାଜବାଦୀ ଶିବିର ନେତୃତ୍ୱରେ ଶାନ୍ତି ଆନ୍ଦୋଳନର ବ୍ୟାପକତା ଏବଂ ଅପରଦିଗରେ ୟୁରୋପ ଓ ଆମେରିକାର ଶକ୍ତିଶାଳୀ ସାମ୍ରାଜ୍ୟବାଦୀ ମାନଙ୍କୁ ଏଶିଆ ଓ ଆଫ୍ରିକା ବଜାରରୁ ତଡ଼ିବା ପାଇଁ ଉପଯୁକ୍ତ ସାମରିକ ଓ ଅର୍ଥନୈତିକ ଶକ୍ତିର ଅଭାବ —ଏହି ଦୋପକ୍ଷରେ ପଡ଼ି ଏଶିଆ ଓ ଆଫ୍ରିକାର ପୁଞ୍ଜିବାଦୀ ରାଷ୍ଟ୍ରମାନେ ଶାନ୍ତି କଥା ଉଚ୍ଚାରଣ କରିବାକୁ ବାଧ୍ୟ ହେଉଛନ୍ତି । ବରଂ ଶାନ୍ତି କଥା କହି, ସାମ୍ରାଜ୍ୟ-ବାଦ ବିରୁଦ୍ଧରେ ପଦେ ଅଧେ ବକ୍ତୃତା ଦେଇ ଛୋଟ ଛୋଟ ଅନୁନ୍ନତ ଦେଶମାନଙ୍କ ଦୃଷ୍ଟି ଆକର୍ଷଣ କରିବା ଏବଂ ସେମାନଙ୍କ ସହ ସୌହାର୍ଦ୍ଦ୍ୟପୂର୍ଣ୍ଣ ସଂପର୍କ ବଜାୟ ରଖି ଆଞ୍ଚଳିକ ଭିତ୍ତିରେ ( Regional basis ) ବ୍ୟବସାୟ ବାଣିଜ୍ୟର କ୍ଷେତ୍ରକୁ ସଂପ୍ରସାରଣ କରିବା ଏମାନଙ୍କ ନିକଟରେ ସୁଗମ ପନ୍ଥା । ସୋଭିଏତ ଓ ଚୀନ ଯେଉଁ ଉଦ୍ଦେଶ୍ୟରେ ଶାନ୍ତି ପାଇଁ ଉଦ୍ୟମ କରୁଛନ୍ତି ସେ ଉଦ୍ଦେଶ୍ୟ ନଥିଲେ ବି, ଶାନ୍ତିବାଣୀ ଘୋଷିବା ବ୍ୟତୀତ ଏମାନଙ୍କର ଅନ୍ୟ ଉପାୟ ନାହିଁ । ଏଣୁ ଲକ୍ଷ୍ୟ ଓ ଉଦ୍ଦେଶ୍ୟରେ ବହୁ ଦିଗରୁ ପାର୍ଥକ୍ୟ

ଅଚଳ ଯୁଦ୍ଧ । ଏହି ସମ୍ମିଳନୀରେ ଅନେକ ପ୍ରସ୍ତାବ ସର୍ବ ସମ୍ମତିକ୍ରମେ ଗୃହୀତ ହୋଇଛି । ଚୌ-ଏନ-ଲାଇ ଗୋଟିଏ କଥାରେ ପ୍ରକାଶ କରିଛନ୍ତି ," Unity in diversity . "ଅର୍ଥାତ୍, ପାର୍ଥକ୍ୟ ଓ ବିଭିନ୍ନତାମଧ୍ୟରେ ଐକ୍ୟ ପ୍ରତିଷ୍ଠା ସମ୍ଭବ ହୋଇଛି । ଏହି ସମ୍ମିଳନୀରେ ଔପନିବେଶିକବାଦର ବିରୋଧୀତା କରାଯାଇଛି ଏବଂ ବିଶେଷ କରି ଫରାସୀ ଦେଶ ଅଧୀନରେ ଥିବା ଟିଉନିସ୍, ଆଲଜେରିଆ ଓ ମରକ୍କୋ, ବ୍ରିଟିଶ ଉପନିବେଶ ଏଡେନ;ହଲଣ୍ଡ ଅଧୀନରେ ଥିବା ପଶ୍ଚିମ ନାଉଗିନ ପ୍ରଭୃତି ଦେଶ, ପ୍ରସ୍ତାବରେ ଉଲ୍ଲେଖ କରାଯାଇଛି । ଦ୍ୱିତୀୟ ପ୍ରସ୍ତାବରେ ସମସ୍ତ ପ୍ରକାର ମାରଣାସ୍ତ୍ର ଓ ବିଶେଷତଃ ଆଣବିକ ଅସ୍ତ୍ରର ନିଷିଦ୍ଧ କରଣ ହେଉ ବୋଲି ଦାବୀ କରାଯାଇଛି । ତୃତୀୟ ପ୍ରସ୍ତାବରେ ଅର୍ଥନୈତିକ ସହଯୋଗିତା ଏବଂ ସାଂସ୍କୃତିକ ବିନିମୟର ପ୍ରୟୋଜନୀୟତାକୁ ସ୍ୱୀକାର କରାଯାଇଛି ଏବଂ ବର୍ଣ୍ଣ ଜାତି ବୈଷମ୍ୟର ନିନ୍ଦାବାଦ କରାଯାଇଛି । ଚତୁର୍ଥ ପ୍ରସ୍ତାବରେ ମିଳିତ ଜାତି ସଂଘରେ ଏସିଆ-ଆଫ୍ରିକାର ବହୁ ସଂଖ୍ୟକ ଦେଶକୁ ସଦସ୍ୟ ହିସାବରେ ଗ୍ରହଣ କରାଯାଉ ବୋଲି ଦାବୀ କରାଯାଇଛି ।

ଉପରୋକ୍ତ ଆଲୋଚନାରୁ ଏହା ପରିଷ୍କାର ହୋଇଛିଯେ ସମ୍ମିଳନୀ ପୃଥିବୀର ପରାଧୀନ ଦେଶମାନଙ୍କର ସ୍ୱାଧୀନତା ସଂଗ୍ରାମକୁ ସମର୍ଥନ ଜଣାଇଛି । ଏଣୁ ଯୋଗଦାନକାରୀ ଦେଶମାନଙ୍କ ମଧ୍ୟରେ ମୌଳିକ ପାର୍ଥକ୍ୟ ଥିଲେ ସୁଦ୍ଧା ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନ ଉପରେ ଏକମତ ହୋଇଛନ୍ତି । ଏହାର ସାଫଲ୍ୟର ମୂଳ କାରଣ ଅନୁସନ୍ଧାନ କରିବାକୁ ଗଲେ ଚୀନର ବକ୍ତବ୍ୟ ଓ ଯୋଗଦାନର କାରଣ ପ୍ରତି ଲକ୍ଷ୍ୟ ରଖିବା ଦରକାର । ଚୌ-ଏନ-ଲାଇ କହିଛନ୍ତି, "But at the Conference we put forward no proposals either against the occupati

**of Taiwan by the U.S.A, and its creation of tension in the Taiwan area or the restoration to the Peoples Republic of China of her legitimate status in the U. N. O. for we did not want to see the Asia-African conference bogged down in disputes and antagonisms on these two questions.** ଅର୍ଥାତ୍ —"ଆମେ ଆମେରିକା କର୍ତ୍ତୃକ ତାଇୱାନ ଦଖଲ କିମ୍ବା ଏ ଅଂଚଳରେ ଯୁଦ୍ଧର ବାତାବରଣ ସୃଷ୍ଟି ବିରୁଦ୍ଧରେ କିମ୍ବା ସମିଳିତ ରାଷ୍ଟ୍ର ପୁଞ୍ଜରେ ଚୀନର ନ୍ୟାଯ୍ୟସ୍ଥାନ ସ୍ୱୀକାର କରିବା ପ୍ରଶ୍ନ ନେଇ କୌଣସି ପ୍ରସ୍ତାବ କରିନାହୁଁ । ଯେହେତୁ ଆମେ ଚାହୁଁ, ଏହି ବିତର୍କମୂଳକ ଦୁଇଟି ପ୍ରଶ୍ନ ନେଇ ସମ୍ମିଳନୀ ବିଫଳ ନହେଉ ।"

ଉପରୋକ୍ତ ଦୁଇଟି ପ୍ରଶ୍ନ ଉପରେ ଚୀନର ନୀତି ଅତି ପରିଷ୍କାର । ଅଥଚ ଯୋଗଦାନକାରୀ ଦେଶମାନେ ଏ ସମ୍ପର୍କରେ କୌଣସି ଅଭିମତ ବ୍ୟକ୍ତ କରି ନାହାନ୍ତି । ଚୀନ ନିଜ ଦେଶର ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଦୁଇଟି ପ୍ରଶ୍ନକୁ ଯାହା ଉପରେ ବଳ ପୂର୍ବକ ଚାପି ଦେଇନାହିଁ, କାରଣ ସମ୍ମିଳନର ସାଫଲ୍ୟ ଦିଗରେ ଚୀନ ଅଧିକ ଉତ୍ସାହୀ ଥିଲା, କିନ୍ତୁ ସମ୍ମିଳନୀର ପରବର୍ତ୍ତୀ ଆଲୋଚନାରେ ଏପରି ସବୁ ପ୍ରସ୍ତାବ ଗ୍ରହଣ କରାଯାଇଛି ଯାହା ଚୀନର ନୀତିବିରୋଧୀ । ଚୀନ ବ୍ୟତୀତ ଯେଉଁସବୁ ଦେଶ ଏହି ସମ୍ମିଳନୀରେ ପ୍ରାଧାନ୍ୟ ଲାଭ କରିଥିଲେ ସେମାନଙ୍କ ମଧ୍ୟରୁ ଭାରତ ଓ ବ୍ରହ୍ମଦେଶର ନାମ ଉଲ୍ଲେଖଯୋଗ୍ୟ । ବାନ୍ଦୁଙ୍ଗ ସମ୍ମିଳନୀ ଆହ୍ୱାନ କରିବା ଦିଗରେ ଏମାନଙ୍କର ଉଦ୍ୟମ ସବୁଠାରୁ ବେଶି । ବର୍ତ୍ତମାନ ପ୍ରଶ୍ନ ହେଉଛି, ଏମାନେ ମୁଖ୍ୟତଃ କେଉଁ ଉଦ୍ଦେଶ୍ୟରେ ସମ୍ମିଳନୀ ଆହ୍ୱାନ କରି

ଥିଲେ ! ପ୍ରକୃତ ବିଶ୍ୱଶାନ୍ତି ପ୍ରତିଷ୍ଠା ଏମାନଙ୍କର ଲକ୍ଷ୍ୟ ନା ଅନ୍ୟ କିଛି ପ୍ରଚ୍ଛନ୍ନ ଉଦ୍ଦେଶ୍ୟ ଥିଲା ।

ସମ୍ମିଳନୀରେ ଘୋଷଣା କରାଯାଇଛି ଯେ ଭାରତ ଅନଗ୍ରସର ଦେଶ ଲଗୁଣି ପୁଞ୍ଜି (Foreign Finance Capital) ସାହାଯ୍ୟରେ ବିଶେଷ ଉନ୍ନତି ଲାଭ କରିଛନ୍ତି । ଏଣୁ ଅର୍ଥନୈତିକ ଦିଗରୁ ଯେଉଁ ପ୍ରସ୍ତାବ ନିଆଯାଇଛି ସେଥିରେ ଭବିଷ୍ୟତରେ ଲଗୁଣି ପୁଞ୍ଜିର ଆଦାନ ପ୍ରଦାନ କରିବା ସପକ୍ଷରେ ଅଭିମତ ବ୍ୟକ୍ତ କରାଯାଇଛି । ଅର୍ଥନୈତିକ ପ୍ରସ୍ତାବର ଏହି ଲକ୍ଷ୍ୟ ସାଧନା ପାଇଁ ପୁଞ୍ଜିବାଦୀ ଦେଶମାନେ ସବୁଠାରୁ ବେଶି ଉତ୍ସାହୀ ଥିଲେ । ଏଥିରୁ ପରିଷ୍କାର ଜଣାପଡୁଛି ଯେ ଆନ୍ତର୍ଜାତିକ ଯୁଦ୍ଧ ବା ଶାନ୍ତିର ପ୍ରଶ୍ନ ନେଇ ଯାହା ପ୍ରସ୍ତାବ ଗୃହୀତ ହେଉ ଅବା ନ ହେଉ ଉପରୋକ୍ତ ଅର୍ଥନୈତିକ ପ୍ରସ୍ତାବ ଗୃହୀତ ହେବା ଫଳରେ ଯୋଗଦାନକାରୀ ପୁଞ୍ଜିବାଦୀ ଦେଶମାନଙ୍କ ସହ ସାମ୍ରାଜ୍ୟବାଦୀ ପ୍ରଭୁମାନଙ୍କର ବନ୍ଧୁତ୍ୱ ବେଶ ଭଲ ଭାବରେ ବଜାୟ ରହିଲା । ଚୀନର ଯୋଗଦାନ ସତ୍ତ୍ୱେ ପୁଞ୍ଜିବାଦୀ ଦେଶମାନେ ଶୋଷଣ ସପକ୍ଷରେ ଏହି ପ୍ରସ୍ତାବକୁ ଗ୍ରହଣ କରିଛନ୍ତି । ଏଠାରେ ବିଚାର କରିବାର କଥା ଯେ ଗୋଟିଏ ପକ୍ଷରେ ଉପନିବେଶବାଦର ତୀବ୍ର ନିନ୍ଦାବାଦ ଏବଂ ଅନ୍ୟ ପକ୍ଷରେ ଲଗୁଣି ପୁଞ୍ଜିକୁ ଅନଗ୍ରସର ଦେଶମାନଙ୍କ ଉନ୍ନତି ପାଇଁ ଆହ୍ୱାନ ଜଣାଇବା, ପରସ୍ପର ବିରୋଧୀ । ଚୀନ ପକ୍ଷରୁ ଏହି ସବୁ ପ୍ରସ୍ତାବ ସଂପର୍କରେ କୌଣସି ମନ୍ତବ୍ୟ ପ୍ରକାଶ ପାଇନାହିଁ, ଯେହେତୁ ସମ୍ମିଳନୀର ସାମଗ୍ରିକ ସାଫଲ୍ୟ ପାଇଁ ଚୀନ ଅଧିକ ଉତ୍ସାହୀ ଥିଲା ।

ଅନ୍ୟ ଏକ ଦିଗରୁ ଭାରତ ସରକାର ଓ ଅନ୍ୟାନ୍ୟ ଉଦ୍ୟୋକ୍ତାଙ୍କର ଭୂମିକା ବିଚାର କରିବା କଥା । ଉପନିବେଶ ବାଦ ସମ୍ବନ୍ଧରେ ଅନେକ କଥା କୁହାଯାଇଛି ଏବଂ ବିଶେଷତଃ ଫରାସୀ

ଅଧିକୃତ ସମସ୍ତ ଉପନିବେଶ ସମ୍ପର୍କରେ ଆଲୋଚନା କରାଯାଇଛି । କିନ୍ତୁ ବ୍ରିଟିଶ ପ୍ରଭୁଙ୍କ ବେଳକୁ କେବଳ ମାଲୟର କଥା ଉଲ୍ଲେଖ କରାଯାଇଛି । କାହିଁକି ? ଆଫ୍ରିକାର ବହୁ ଦେଶ ବ୍ରିଟିଶ ଶାସନ ଓ ଶୋଷଣ ତଳେ ନିଷ୍ପେଷିତ । ଉଦାହରଣ ସ୍ୱରୂପ—ଉଗାଣ୍ଡା, କେନିଆ ଟାଙ୍ଗାଇକା, ନାଇଜେରିଆ, ଗୋଲ୍ଡକୋଷ୍ଟ ପ୍ରଭୃତି ଦେଶମାନଙ୍କରେ ବ୍ରିଟେନର ଶୋଷଣ ଓ ଅତ୍ୟାଚାରର ସୁଅ ଛୁଟୁଛି । ଅଥଚ ଏ ସମ୍ପର୍କରେ ପଦେ ହେଲେ କଥା ଉଠିଲା ନାହିଁ । ଗୋଟିଏ ମୁଖରେ ରାମ ନାମ ଶାନ୍ତିବାଣୀ ଓ ବିଶ୍ୱ ମୈତ୍ରୀର ଛଳନା ଏବଂ ଅନ୍ୟ ମୁଖରେ ବ୍ରିଟିଶ ପ୍ରଭୁଙ୍କ ପ୍ରତି ତୋଷାମଦ ଏ ସବୁ ପୁଞ୍ଜିବାଦୀ ଦେଶର ପ୍ରକୃତ ମନୋଭାବ ।

ଏହି ସମ୍ମିଳନୀରେ ଭାରତ ସରକାର ତଥା ଭାରତୀୟ ପୁଞ୍ଜିପତି ଶ୍ରେଣୀର ଅନ୍ୟ ଏକ ପ୍ରଧାନ ଉଦ୍ଦେଶ୍ୟ ଚରିତାର୍ଥ ହୋଇଛି । ତା ହେଉଛି ଦକ୍ଷିଣ ପୂର୍ବ ଏସିଆର ବଜାର ଉପରେ ଆଞ୍ଚଳିକ ଭିତ୍ତିରେ ଆଧିପତ୍ୟ ବିସ୍ତାର କରିବା ଏବଂ ସେହି ବଜାରକୁ ଯଥା ସମ୍ଭବ ବୃହତ ଶକ୍ତିମାନଙ୍କ କବଳରୁ ମୁକ୍ତ ରଖିବା । ଭାରତୀୟ ପୁଞ୍ଜିପତି ଶ୍ରେଣୀର ଅନ୍ୟତମ ମୁଖପତ୍ର "Eastern Economist, ବ୍ରହ୍ମଦେଶ ଓ ଭାରତ ମଧ୍ୟରେ ପାରସ୍ପରିକ ବାଣିଜ୍ୟ ସମ୍ପର୍କ ନେଇ ମନ୍ତବ୍ୟପ୍ରକାଶ କରି ଲେଖିଛନ୍ତି :—The publication- ... should be a reminder to us that India like Burma is also in need of markets.........At this time while we are thinking sectorwise in terms of national policy we have not realised that Indian industrialisation is concerned vitally with the problem of building goodwill in south East Asia"

ଏଠାରେ ପରିଷ୍କାର କୁହାଯାଇଛି ଯେ ବ୍ରହ୍ମଦେଶ ପକ୍ଷ ଭାରତବର୍ଷର ମଧ୍ୟ ବଜାର ଦରକାର । ଭାରତବର୍ଷର ନିର୍ଦ୍ଦିଷ୍ଟ ଦକ୍ଷିଣପୂର୍ବ ଏସିଆର ଦେଶମାନଙ୍କ ସହ ସୌହାର୍ଦ୍ଦ୍ୟପୂର୍ଣ୍ଣ ସମ୍ପର୍କ ପ୍ରତିଷ୍ଠା ଉପରେ ନିର୍ଭରଶୀଳ । ଏହି ପ୍ରବନ୍ଧରେ ଆହୁରି ମଧ୍ୟ ଉଲ୍ଲେଖ କରାଯାଇଛି ଯେ ଭାରତବର୍ଷ ଚାଉଳ ଉତ୍ପାଦନ କ୍ଷେତ୍ରରେ ସ୍ୱାବଲମ୍ବୀ ହେବା ଅନୁଚିତ । ଯେହେତୁ ବ୍ରହ୍ମଦେଶ ଭାରତକୁ ଚାଉଳ ଯୋଗାଇବ ଏବଂ ଭାରତ ଚାଉଳ ପରିବର୍ତ୍ତେ ଅନ୍ୟାନ୍ୟ ଶିଳ୍ପଜାତ ଜିନିଷ ବ୍ରହ୍ମଦେଶ ବଜାରକୁ ପଠାଇବ । ଏହି ପ୍ରବନ୍ଧର ଉପସଂହାର ରେ କୁହାଯାଇଛି :— "**All that now need be said is that the present conversations which are a prelude to economic discussion at the Afro-Asian conference to be held this month provide a testing ground both for India and Burma (The perils of National Self-Sufficiency—Eastern Economist April'55**ରୁ ଉଦ୍ଧୃତ )

ଉପରୋକ୍ତ ବକ୍ତବ୍ୟରୁ ଏକଥା କଣ ପରିଷ୍କାର ଜଣା ପଡୁନାହିଁ ଯେ ଦକ୍ଷିଣ ପୂର୍ବ ଏସିଆ ଏବଂ ଆଫ୍ରିକାର ଅନୁନ୍ନତ ଦେଶଗୁଡ଼ିକର ବଜାର ଉପରେ ଯେପରି ଶୀଘ୍ର ଆଧିପତ୍ୟ ବିସ୍ତାର ହୁଏ ସେଥିପାଇଁ ଆଲୋଚନା ଓ କର୍ମପନ୍ଥା ଠିକ୍ କରିବା ଭାରତ ଓ ବର୍ମା ପ୍ରଭୃତି ଅପେକ୍ଷାକୃତ ଉନ୍ନତ ପୁଞ୍ଜିବାଦୀ ଦେଶମାନଙ୍କର ପ୍ରଧାନ ଲକ୍ଷ୍ୟ ଥିଲା ? କିନ୍ତୁ ସେ ଲକ୍ଷ୍ୟ ସାଧନ କରିବାକୁ ହେଲେ ଯେଉଁ ସାମରିକ ଓ ଅର୍ଥନୈତିକ ଶକ୍ତି ଦରକାର ତାହା ଭାରତବର୍ଷର ନାହିଁ । ସାମ୍ରାଜ୍ୟବାଦୀ ଦେଶମାନଙ୍କର ତୁଳନାରେ ଭାରତବର୍ଷର ନେହେରୁ ସରକାର ଖୁବ ଦୁର୍ବଳ । ଏଣୁ ଶାନ୍ତିବାଦୀ

ବର୍ତ୍ତମାନ ଅବସ୍ଥାରେ ଯେହେତୁ ସରକାର ପକ୍ଷରେ ଶାନ୍ତିର ରାଜନୀତି ସବୁଠାରୁ ଶ୍ରେୟସ୍କର । ଯେତେଦିନ ପର୍ଯ୍ୟନ୍ତ ଏହି ସାମରିକ ଓ ଅର୍ଥନୈତିକ ଦୁର୍ବଳତା ଦୂର ନହେଉଛି ସେତେଦିନ ପର୍ଯ୍ୟନ୍ତ ଯେହେତୁ ସରକାରର ବୈଦେଶିକ ନୀତିରେ ଶାନ୍ତିର କଥା ସ୍ଥାନ ପାଇବ ।

## ସୁଏଜ କେନାଲ ଜାତୀୟକରଣ

ସୁଏଜ କେନାଲ ମିଶରର ଜାତୀୟ ସମ୍ପଦ ଏବଂ ଏହି କେନାଲ ଉପରେ ମିଶରର ସାର୍ବଭୌମ ଅଧିକାର ସର୍ବଜନସ୍ୱୀକୃତ । କିନ୍ତୁ ୧୮୬୯ ସାଲ ଠାରୁ ୧୯୫୪ ସାଲ ପର୍ଯ୍ୟନ୍ତ ବ୍ରିଟିଶ ଫରାସୀ ସାମ୍ରାଜ୍ୟବାଦୀ ଗୋଷ୍ଠୀ ସୁଏଜ କେନାଲକୁ ନିଜ କବ୍ଜାରେ ରଖି ପ୍ରଚୁର ମୁନାଫା ଲୁଣ୍ଠନ କରି ଆସୁଥିଲେ । କେବଳ ୧୯୫୪ସାଲରେ ଏମାନଙ୍କର ଲାଭ ହୋଇଥିଲା ୪୦ କୋଟି ୯୫ ଲକ୍ଷ ୭୩ ହଜାର ଟଙ୍କା । ଏହି ଲାଭର ଅଧିକାଂଶ ଭାଗ ସାମ୍ରାଜ୍ୟବାଦୀମାନେ ଭୋଗ କରୁଥିଲେ । ମିଶର କର୍ତ୍ତୃକ ସୁଏଜକେନାଲ ଜାତୀୟକରଣ ହେବା ଫଳରେ ସେ ମୁନଫା ହାତ ଛଡ଼ା ହୋଇଗଲେ, ଏବଂ ଇଉରୋପୀୟ ସାମ୍ରାଜ୍ୟବାଦୀଙ୍କର ରାଜନୈତିକ କ୍ଷମତା ମଧ୍ୟ ଆରବ ଅଞ୍ଚଳରୁ ହ୍ରାସ ପାଇଲା । ଏହାର ପ୍ରତିଶୋଧ ନେବା ନିମନ୍ତେ ବ୍ରିଟିଶ, ଫ୍ରାନ୍ସ ଯୁଦ୍ଧଖୋର ଗୋଷ୍ଠୀ ଶାନ୍ତି ରକ୍ଷା ବାହାନାରେ ବଳପୂର୍ବକ ମିଶର ଉପରେ ଆକ୍ରମଣ କରି ସୁଏଜକେନାଲକୁ ପୁନର୍ବାର କରଗତକରିବା ପାଇଁ ଉଦ୍ୟମ କଲେ ଏବଂ ସେଥିପାଇଁ ଇସ୍ରାଇଲକୁ ପରୋକ୍ଷଭାବେ ସାହାଯ୍ୟ ଦେଇ ଆରବ ରାଜ୍ୟ ଗୁଡ଼ିକ ମଧ୍ୟରେ ବିଭେଦ ଓ କଳହ ସୃଷ୍ଟି କଲେ । କିନ୍ତୁ ଏ ସବୁ ଷଡ଼ଯନ୍ତ୍ର ସତ୍ତ୍ୱେ ଆରବ ଅଂଚଳର ଅଧିକାଂଶ ରାଜ୍ୟ ମିଶରକୁ ସୈନ୍ୟ ସାମନ୍ତ ଓ ଯୁଦ୍ଧ ସରଞ୍ଜାମ ଦେଇ

ସାହାଯ୍ୟ କରିବା ନିମନ୍ତେ ଆଗେଇ ଆସିଲେ । କେବଳ ସେତିକି ନୁହେଁ, ସାରା ଦୁନିଆର ଜନମତ ମିଶର ସପକ୍ଷରେ ଜାଗି ଉଠିଲା ଏବଂ ଶେଷରେ ୟୁରୋପୀୟ ସାମ୍ରାଜ୍ୟବାଦୀମାନଙ୍କର ସମସ୍ତ ଚକ୍ରାନ୍ତ ବ୍ୟର୍ଥ ହେଲା ।

ଏହି ଆନ୍ତର୍ଜାତିକ ସଂଘର୍ଷରେ ଭାରତର ଦୃଷ୍ଟିଭଙ୍ଗୀ ବିଚାର କରିବା ଦରକାର । ସୁଏଜକେନାଲର ଜାତୀୟକରଣକୁ ଭାରତବାସୀ ପୂର୍ଣ୍ଣ ସମର୍ଥନ ଜଣାଇଥିଲେ । ଅନ୍ୟ ଦଗରେ ଭାରତୀୟ ପୁଞ୍ଜିପତି ଶ୍ରେଣୀ ଓ ତାର ମୁଖପାତ୍ର କଂଗ୍ରେସ ସରକାର ଏହି ବ୍ୟବସ୍ଥାକୁ ସମର୍ଥନ କରିଥିଲେ ମଧ୍ୟ ଭିନ୍ନ ଉଦ୍ଦେଶ୍ୟ ପରିଲକ୍ଷିତ ହୁଏ । ୟୁରୋପୀୟ ସାମ୍ରାଜ୍ୟବାଦୀ ଦେଶମାନଙ୍କ ସହ ମିଶରର ବାଣିଜ୍ୟ କ୍ଷେତ୍ରରେ ଅଚଳ ଅବସ୍ଥାର ସମ୍ଭାବନା ଦେଖି ମିଶରେ ବଜାର ଦଖଲ କରିବାର କଳ୍ପନା ଜଳ୍ପନା ଭାରତୀୟ ପୁଞ୍ଜିପତି ଶ୍ରେଣୀ ମହଲରେ ଚାଲିଲା । ସରକାର ଇଷ୍ଟର୍ଣ୍ଣ ଇକୋନୋମିଷ୍ଟ ଏ ପ୍ରସଙ୍ଗରେ ଆଲୋଚନା କରିବାକୁ ଯାଇ ଲେଖିଥିଲେ—

" AS the United Kingdom has ceased to be good market for Egyptian cotton and as this trend is likely to continue, thanks to the Suez canal imbroglio, new trade relationships of a more balanced kind with countries which can buy her cotton have become and are becoming a matter of necessity for Egypt. It is here that India with her programme to import raw cotton at an annua rate of Rs 54 crores worth in the second plan period, can come in to picture and establish a

**flourishing trade relationship with a country which like ours, is poised for some very dynamic expansion not withstanding the present obstackle besetting her······ India must play her cards for the long haul'' (Page 151 Aug 3,56)**

ଅର୍ଥାତ ଯେ ହେତୁ ସୁଏଜ କେନାଲ୍ ଜାତୀୟକରଣ ଫଳରେ ବ୍ରିଟେନରେ ଇଜିପ୍ଟର ତୁଳା ବଜାର ବନ୍ଦ ହୋଇଗଲା ଏବଂ ଏ ପ୍ରକାର ପରିସ୍ଥିତି ଆହୁରି ବହୁଦିନ ଅପରିବର୍ତ୍ତିତ ରହିବା ସ୍ୱାଭାବିକ, ସୁତରାଂ ଯେଉଁ ସବୁ ଦେଶ ଇଜିପ୍ଟର ତୁଳା କିଣି ପାରିବେ ସେମାନଙ୍କ ସହ ନୂତନ ଧରଣର ଓ ସ୍ଥାୟୀ ବ୍ୟବସାୟ ସମ୍ପର୍କ ସ୍ଥାପନ କରିବାର ପ୍ରୟୋଜନୀୟତା ଇଜିପ୍ଟ କ୍ରମେ ଅନୁଭବ କରୁଛି । ଭାରତବର୍ଷ ତା'ର ଦ୍ୱିତୀୟ ପଞ୍ଚବାର୍ଷିକ ପରିକଳ୍ପନା ଅନୁଯାୟୀ ପ୍ରତିବର୍ଷ ୪୫ କୋଟି ଟଙ୍କାର ତୁଳା ଆମଦାନୀ କରିବ ଏବଂ ସେହି ଦୃଷ୍ଟିରୁ ଭାରତବର୍ଷ ଏଭଳି ଦେଶ ସହ ସମୃଦ୍ଧିଶାଳୀ ବାଣିଜ୍ୟ ସମ୍ପର୍କ ସ୍ଥାପନ କରିବ ଯେଉଁ ଦେଶ ତାର ସମସ୍ତ ବାଧା ବିପତ୍ତି ସତ୍ତ୍ୱେ ଭାରତବର୍ଷ ସଦୃଶ ଅଗ୍ରଗତିପାଇଁ ଚେଷ୍ଟିତ । ... ... ... ଭାରତ ବର୍ଷକୁ ଏହି ଭାଗବଣ୍ଟନରେ ଠିକ୍ ବାଜି ମାରିବାକୁ ହେବ ।

କାହାର ପୌଷମାସ, କାହାର ସର୍ବନାଶ । ଆମେ ବାରମ୍ବାର ଶୁଣୁଛେ ପଣ୍ଡିତ ନେହେରୁ କୁଆଡେ ଆନ୍ତର୍ଜାତିକ ଶାନ୍ତି ଆନ୍ଦୋଳନର ଅଗ୍ରଦୂତ । ବୈଦେଶିକ ନୀତି ବୟାନ ସମୟରେ ସେ ଶାନ୍ତି ଛଡ଼ା ଆଉ କୌଣସି କଥା ଉଚ୍ଚାରଣ କରନ୍ତି ନାହିଁ । ପରାଧୀନ ଦେଶର ମୁକ୍ତି ଆନ୍ଦୋଳନ ପାଇଁ ସେ ସବୁବେଳେ ବ୍ୟାକୁଳ । କାଶ୍ମୀରର କ୍ଷେତ୍ରରେ ତା ହୋଇଛି କି ? ଲଣ୍ଡନ ସମ୍ମିଳନୀରେ କୃଷ୍ଣ-ମେନନ ଭାରତ ପକ୍ଷରୁ ଯେଉଁ ପ୍ରସ୍ତାବ ପେଶ କରିଥିଲେ

ତାହାର ଆଲୋଚନା ହେଲେ ଏକଥା ସ୍ପଷ୍ଟ ହେବ ଯେ ତାଙ୍କର ବକ୍ତବ୍ୟ ଭାରତୀୟ ପୁଞ୍ଜିପତି ଶ୍ରେଣୀର ଭବିଷ୍ୟତ ସ୍ୱାର୍ଥ ଦୃଷ୍ଟିରୁ ନିର୍ଦ୍ଧାରିତ ହୋଇଥିଲା । ଭାରତବର୍ଷକୁ ଏହି ଭାରବଣ୍ଟାରେ ଠିକ ତାଳ ମାରିବାକୁ ହେବ ( **India must paly her cards for the long haul** )—ଏହାହିଁ ହେଉଛି ତାଙ୍କର ପ୍ରସ୍ତାବର ମୂଳମନ୍ତ୍ର ।

ଏହି ସମ୍ମିଳନୀରେ ବ୍ରିଟେନର ଦାବୀ ଥିଲା, ସୁଏଜ କେନାଲ ଏକ ଆନ୍ତର୍ଜାତିକ ବୋର୍ଡ ଅଧୀନରେ ରହିବ; ମିଶର ଦାବୀ କଲା କେନାଲ ମିଶର ହାତରେ ରହିବ ଏବଂ କାମ ସୁଚାରୁ ରୂପେ ହେଉଛି କି ନାହିଁ ତାହା ଦେଖିବା ପାଇଁ ଏକ ଆନ୍ତର୍ଜାତିକ ଉପଦେଷ୍ଟା ବୋର୍ଡ ଗଠିତ ହେବ ଏବଂ ଉପଦେଶ ଦେବା ବ୍ୟତୀତ ଏହି ବୋର୍ଡର ଅନ୍ୟ କୌଣସି କ୍ଷମତା ରହିବ ନାହିଁ । ଭାରତବର୍ଷର ଯୋଜନା ଅନୁଯାୟୀ ସୁଏଜକେନାଲ କମ୍ପାନୀ ମିଶର ହାତରେ ରହିବ । ତେବେ କଂପାନୀଟି କେବଳ ମିଶରୀୟ ନହୋଇ କେନାଲ ବ୍ୟବହାରକାରୀ ବିଦେଶୀ ଶକ୍ତିଙ୍କୁ ନେଇ ଏକ ଯୌଥ ମିଶରୀୟ କଂପାନୀ କରାଯିବ, ଏବଂ କାମ ତଦାରଖ କରିବା ପାଇଁ ଗୋଟିଏ ଉପଦେଷ୍ଟା ବୋର୍ଡ ଗଠନ କରାଯିବ । ମିଶର ଯେଉଁଟି ମିଶରୀୟ କଂପାନୀ ଦାବୀ କରୁଛି, ଭାରତ ସେଠି ଯୌଥ କଂପାନୀ ହେବା ଦରକାର ବୋଲି ମତ ଦେଇଛି । ଭାରତର ପରିକଳ୍ପନାକୁ ଯଦି ଗ୍ରହଣ କରାଯାଏ ତେବେ ବିଦେଶୀ ଶକ୍ତିଗୁଡ଼ିକ ପଛ ବାଟେ ପ୍ରବେଶ କରି କେନାଲଉପରେ ନିଜର ଆଧିପତ୍ୟ ପ୍ରତିଷ୍ଠା କରିବାର ସୁଯୋଗ ପାଇବେ । ମୁଖରେ ସ୍ୱାଧୀନତାର ବାଣୀ, କିନ୍ତୁ କର୍ମରେ ବ୍ରିଟିଶ ତୋଷଣ ନୀତି କାହିଁକି ? ଏହାର ଉତ୍ତର ଇଷ୍ଟର୍ଣ୍ଣ ଇକୋନୋମିଷ୍ଟ ଦେଇଛି— **Pandit Nehru has repeatedly**

stated that India remains in the Common Wealth because it is in her own interest to do so ......... They are many and varied and I am going to put to you that among them is the continuations of a Commonwealth sphere of influence in the Suez canal and the middle eastern area for several decades to come" (Eastern Economist P. 239 Aug. 17, '56 )

ଅର୍ଥାତ ପଣ୍ଡିତ ନେହେରୁ ଏକଥା ବାରମ୍ବାର ଘୋଷଣା କରିଛନ୍ତି ଯେ ଭାରତବର୍ଷ ତା'ର ନିଜର ସ୍ୱାର୍ଥ ଦୃଷ୍ଟିରୁ କମନ-ଓ୍ୱେଲଥ ଭିତରେ ରହିଛି । ସେ ସ୍ୱାର୍ଥ ବହୁ ପ୍ରକାର । ତେବେ ତାହାର ଅନ୍ୟତମ ସ୍ୱାର୍ଥ ହେଉଛି ସୁଏଜ କେନାଲ ଏବଂ ମଧ୍ୟପୂର୍ବ ଏସିଆରେ ଅନ୍ତତଃ ବହୁଦିନ ପାଇଁ କମନ୍‌ଓ୍ୱେଲଥ ପ୍ରଭାବକୁ ବଂଚାଇ ରଖିବା (ଇଷ୍ଟର୍ଣ୍ଣ ଇକୋନୋମିଷ୍ଟ ୨୩୯ ପୃଷ୍ଠା ୧୭ ଅଗଷ୍ଟ ୧୯୫୬ )

ଗୋଟିଏ ଦିଗରେ ମିଶର ସହ ଭାରତର ବଂଧୁତ୍ୱ ଥିଲେ ବି ଅନ୍ୟ ଦିଗରେ କମନଓ୍ୱେଲଥର ସ୍ୱାର୍ଥ କଥା ଚିନ୍ତା କରିବା ପୁଞ୍ଜିବାଦୀ ସ୍ୱାର୍ଥ ଦ୍ୱନ୍ଦ୍ୱର ଏକ ବିଚିତ୍ର ରୂପ । ଭାରତବର୍ଷର ପୁଞ୍ଜିପତିମାନେ ଯେପରି ପରସ୍ପର ମଧ୍ୟରେ ପ୍ରତିଯୋଗିତା କରନ୍ତି, ସେହିପରି ଏକଜୁଟ ହୋଇ ଅନ୍ୟ ଦେଶର ପୁଞ୍ଜିପତିମାନଙ୍କ ସହ ମଧ୍ୟ ପ୍ରତିଯୋଗିତା କରନ୍ତି । ପୁଣି ଆନ୍ତର୍ଜାତିକ କ୍ଷେତ୍ରରେ ବିଭିନ୍ନ ସମୟରେ କେତେକ ପୁଞ୍ଜିବାଦୀ ଦେଶ ମେଣ୍ଟ ଗଢି ଅନ୍ୟ କେତେକ ପୁଞ୍ଜିବାଦୀ ଦେଶ ସହ ପ୍ରତିଯୋଗିତା କରନ୍ତି । ଏହି ବିଭିନ୍ନ ପ୍ରତିଯୋଗିତା ଓ ଦ୍ୱନ୍ଦ୍ୱ ଉପରେ ଭିତ୍ତିକରି ବିଭିନ୍ନ ନୀତି ନିର୍ଦ୍ଧାରିତ ହୁଏ । ଏଣୁ କମନ୍‌ଓ୍ୱେଲଥ ଭିତରେ ରହି ବୃଟେନକୁ ପୂର୍ଣ୍ଣ

ସମର୍ଥନ ନକରିବା, ଏବଂ ମିଶର ସହ ଏକ ମେଣ୍ଟରେ ରହି ଇଉରୋପୀୟ ସାମ୍ରାଜ୍ୟବାଦୀଙ୍କ ବିରୁଦ୍ଧରେ ପ୍ରତିବାଦ କରିବା ସତ୍ତ୍ୱେ ମିଶରକୁ ପୂର୍ଣ୍ଣ ସମର୍ଥନ ନକରିବା—ପୁଞ୍ଜିବାଦୀ ସ୍ୱାର୍ଥ ଦ୍ୱନ୍ଦ୍ୱର ବିଭିନ୍ନ ରୂପ ଓ ପରିଚୟ ମିଳେ । କହିବା ବାହୁଲ୍ୟ ଯେ ଏ ପ୍ରତିଯୋଗିତା ପରସ୍ପରକୁ ସହଯୋଗ କରିବା ଉଦ୍ଦେଶ୍ୟରେ ନୁହେଁ । ବରଂ ଜଣକ ଉପରେ ଅନ୍ୟ ଜଣର ଆଧିପତ୍ୟ ବିସ୍ତାର କରିବାର ମନୋଭାବକୁ ଭିତ୍ତି କରି ଦ୍ୱନ୍ଦ୍ୱ ହୁଏ ।

ଭାରତ ଜାଣେ ଯେ ମିଶର ପୁଞ୍ଜିବାଦୀ ଦେଶ । ଭାରତୀୟ ପୁଞ୍ଜିପତିମାନଙ୍କର ଯେପରି ବିଦେଶୀ ବଜାର ଦରକାର ସେହିପରି ମିଶରୀୟ ପୁଞ୍ଜିପତିମାନଙ୍କର ମଧ୍ୟ ବଜାର ଦରକାର । ସେହି କାରଣ ନେଇ ମିଶର ସମସ୍ତ ଆରବ ଦେଶକୁ ଏକତ୍ରିତ କରି ସମଗ୍ର ପଶ୍ଚିମ ଏସିଆରେ ନିଜର ଆଧିପତ୍ୟ ବିସ୍ତାର କରିବାର ଚେଷ୍ଟା କରୁଛି । ସେହିପରି ଦକ୍ଷିଣ ପୂର୍ବ ଏସିଆର ଦେଶ ଗୁଡ଼ିକୁ ନେଇ ଭାରତ ଏକ ଶକ୍ତି ମେଣ୍ଟ ଗଠନ କରିବାରେ ଲାଗି ପଡ଼ିଛି । ଏଣୁ ଏହି ଦୁଇଶକ୍ତି ମଧ୍ୟରେ ଯେଉଁ ବନ୍ଧୁତ୍ୱ ପୂର୍ଣ୍ଣ ସମ୍ପର୍କ ଅଛି ଭବିଷ୍ୟତରେ ତାହା ଛିନ୍ନ ହେବାର ଯଥେଷ୍ଟ ସମ୍ଭାବନା ରହିଛି । ଇତିହାସର ଶିକ୍ଷା ହେଉଛି, ଯେ ପୁଞ୍ଜିବାଦରୁ ସାମ୍ରାଜ୍ୟବାଦ ଜନ୍ମ ନିଏ । ବିଭିନ୍ନ ଶକ୍ତି ମଧ୍ୟରେ ବଜାର ନେଇ ସଂଘର୍ଷର ମୂଳ କାରଣ ହେଉଛି ସାମ୍ରାଜ୍ୟବାଦ । ଏଣୁ ଦେଖିବାକୁ ମିଳେ ଯେ ଏହି ଶକ୍ତି ଗୁଡ଼ିକ ଉକ୍ତ ସଂଘର୍ଷରେ ନିଜ ନିଜର ବଳସୂଲଭ ଆଶା ରଖି ବିଭିନ୍ନ ଭୌଗୋଳିକ ଅଞ୍ଚଳକୁ ନିଜନିଜର କବ୍ଜାରେ ରଖିବାପାଇଁ ଚେଷ୍ଟା କରନ୍ତି । ସୁଏଜ କେନାଲ ସେହିପରି ଏକ ଅଂଚଳ ଏବଂ ତା ନେଇ ଏତେ ଦ୍ୱନ୍ଦ୍ୱ । ସେହି କାରଣରୁ କେନାଲର ପୂର୍ବ କର୍ତ୍ତୃତ୍ୱ ମିଶର ହାତରେ ଛାଡ଼ି ଦେବାପାଇଁ ଭାରତୀୟ ପୁଞ୍ଜିପତି ଶ୍ରେଣୀ ପ୍ରସ୍ତୁତ

ନୁହନ୍ତି । ଭାରତୀୟ ପୁଞ୍ଜିବାଦୀ ସ୍ୱାର୍ଥରେ ଆଘାତ ଆଣୁଥିବା ମିଶରୀୟ ପୁଞ୍ଜିପତି ଶ୍ରେଣୀର କୌଣସି କାର୍ଯ୍ୟକଳାପକୁ ଦମନ କରିବାରେ ଭାରତବର୍ଷ ଏକାକୀ ସକ୍ଷମ ନୁହେଁ । ଏଣୁ ଦୁର୍ବଳ ଭାରତ ସରକାର ସୁଏଜ କେନାଲକୁ ଏକ ଯୌଥ କଂପାନୀ ହାତରେ ଟେକି ଦେବାକୁ ଚାହେଁ । ଅବଶ୍ୟ ଭାରତୀୟ ପୁଞ୍ଜିବାଦ ଯେତେ ଦିନ ପର୍ଯ୍ୟନ୍ତ ଶକ୍ତିଶାଳୀ ନ ହୋଇଛି ସେତେଦିନ ପର୍ଯ୍ୟନ୍ତ ଏ ପ୍ରକାର ବ୍ୟବସ୍ଥା କ୍ଷଣସ୍ଥାୟୀ । ଇଷ୍ଟର୍ଣ୍ଣ ଇକୋନୋମିଷ୍ଟ ଲେଖିଛନ୍ତି—Given some decades of world peace, India can build her own power up untill she becomes strong enough to influence the course of world relationships in direction that suit her" (Page 240 Aug 17, 1956)

ଅର୍ଥାତ୍ ଆସନ୍ତା କେତେକ ଦଶକ ବିଶ୍ୱ ଶାନ୍ତିର ସୁଯୋଗ ପାଇଲେ ଭାରତବର୍ଷ ତାର ଶକ୍ତିକୁ ଏପରି ଭାବେ ସଂଗଠିତ କରିବ ଯେ, ସେ ନିଜର ମନଖୁସି ମୁତାବକ ସାରା ଦୁନିଆର ଶକ୍ତି-ଗୁଡ଼ିକର ସଂପର୍କକୁ ନିଜ ସ୍ୱାର୍ଥରେ ପରିଚାଳିତ କରିବାରେ ସକ୍ଷମ ହୋଇପାରିବ ।

ଉପରୋକ୍ତ ଆଲୋଚନାରୁ ଆନ୍ତର୍ଜାତିକ ରାଜନୀତିରେ ନେହେରୁ ସରକାରର ଭୂମିକା ଓ ବୈଦେଶିକ ନୀତିର ପ୍ରକୃତ ସ୍ୱରୂପ ଜଣାପଡ଼େ । ସେ ଉଦ୍ଦେଶ୍ୟ ବିଶ୍ୱଶାନ୍ତି ଓ ମୁକ୍ତି ଆନ୍ଦୋଳନକୁ ଶକ୍ତିଶାଳୀ କରିବା ନୁହେଁ —ଆନ୍ତର୍ଜାତିକ ଦ୍ୱନ୍ଦ୍ୱର ସୁଯୋଗ ନେଇ ଭାରତୀୟ ପୁଞ୍ଜିବାଦକୁ ଏକ ବୃହତ୍ ଶକ୍ତି ରୂପେ ପ୍ରତିଷ୍ଠା କରିବା ।

# ଭାରତୀୟ ପୁଞ୍ଜିବାଦର ବିକାଶ

ଗତ ଦ୍ୱିତୀୟ ବିଶ୍ୱଯୁଦ୍ଧ ଫଳରେ ଆମ ଦେଶର ପୁଞ୍ଜିପତି ଶ୍ରେଣୀର ଏକ ଆମୂଳ ପରିବର୍ତ୍ତନ ଘଟିଛି । ଦେଶ ଯେତେବେଳେ ବ୍ରିଟିଶ ସାମ୍ରାଜ୍ୟବାଦ ଅଧୀନରେ ଅତ୍ୟାଗ୍ରତ, ଦୁର୍ଭିକ୍ଷ ମହାମାରୀରେ ବିପର୍ଯ୍ୟସ୍ତ ସେତେବେଳେ ଆମଦେଶର ପୁଞ୍ଜିପତି-ବ୍ୟବସାୟୀମାନେ ଚୁଜଳ, ପାଟ, ଲୁଗା ମିଲଠାରୁ କଣ୍ଟ୍ରାକ୍ଟ ଆଦି ବହୁ'ରକମର ବ୍ୟବସାୟ ମାଧ୍ୟମରେ କୋଟି କୋଟି ଟଙ୍କାର ମୁନାଫା ଲୁଣ୍ଠନ କରିଛନ୍ତି । ବ୍ରିଟିଶ ସାମ୍ରାଜ୍ୟବାଦର ବାନ୍ଧନୀ ସ୍ୱାତନ୍ତ୍ରେ ଦିନେ ଭାରତର ଦୁର୍ବଳ ପୁଞ୍ଜିବାଦ ଜନ୍ମ ନେଇଥିଲା । ଭାରତୀୟ ପୁଞ୍ଜିବାଦ କେବେ ନିଜର ଶକ୍ତି ଓ ସାମର୍ଥ୍ୟ ଉପରେ ଗଢ଼ି ଉଠିନାହିଁ । କିନ୍ତୁ ମହାଯୁଦ୍ଧ ଶେଷରେ ଦେଖାଗଲା ଯେ ଭାରତଠାରୁ ବ୍ରିଟିଶ ପୁଞ୍ଜିପତି-ମାନେ ୩୦୦ କୋଟି ଷ୍ଟର୍ଲିଂର ଋଣ କରିଛନ୍ତି । ବିଶ୍ୱ ମହାଯୁଦ୍ଧର ଆବର୍ତ୍ତରେ ସମଗ୍ର ଧନତାନ୍ତ୍ରିକ ଦୁନିଆ ଯେତେବେଳେ ବିଧ୍ୱସ୍ତ, ଏବଂ ମାର୍କିନ ଯୁକ୍ତରାଷ୍ଟ୍ର ବ୍ୟତୀତ ଅନ୍ୟ ସବୁ ଧନତାନ୍ତ୍ରିକ ଦେଶର ଅର୍ଥନୀତି ଯେତେବେଳେ ଯୁଦ୍ଧକାଳୀନ ସଂକଟ ଓ ଅର୍ଥନୈତିକ ବିପର୍ଯ୍ୟୟ ଫଳରେ ଧ୍ୱଂସ-ପ୍ରାୟ; ସେତେବେଳେ ଭାରତୀୟ ପୁଞ୍ଜିପତି-ମାନଙ୍କର ଏହି ୩୦୦ କୋଟି ଷ୍ଟର୍ଲିଂର ପାଉଣା କିପରି ଜମାହେଲା ତାହା ବାସ୍ତବିକ ବିସ୍ମୟକର । ଆମେରିକା ତାର ବିଶେଷ ଅବସ୍ଥାନ ଫଳରେ ଯୁଦ୍ଧକାଳୀନ ଧ୍ୱଂସଲୀଳାରୁ ମୁକ୍ତ ରହି ଯୁଦ୍ଧରତ ପୃଥିବୀକୁ ଟଙ୍କା ଅସ୍ତ୍ରଶସ୍ତ୍ର ଓ ମାଲସାମଗ୍ରୀ ସରବରାହ କରି ପ୍ରଚୁର ମୁନାଫା ଉଠାଇ ପାରିଥିଲା । କିନ୍ତୁ ଭାରତୀୟ ପୁଞ୍ଜିପତି-ମାନେ ସେ ଭଳି ଶକ୍ତି ଓ ସାମର୍ଥ୍ୟ ଅର୍ଜନ କରି ପାରି ନଥିଲେହେଁ ଅନ୍ୟାୟ ଦରରେ ମାଲ ମହଜୁତ ରଖି କୃତ୍ରିମ ଦୁର୍ଭିକ୍ଷ ସୃଷ୍ଟି କରି

ଅଗାଧ ମୁନାଫା ଲୁଟିଥିଲେ । ଯୁଦ୍ଧ ଦପ୍ତରୁ ନିର୍ଣ୍ଣିନ୍ତରେ ମହାଜନୀ କାରବାରକର ପୁଞ୍ଜି ଉଠାଇବାର ଏହି ଫନ୍ଦ, ଭାରତୀୟ ପୁଞ୍ଜିପତି ମାନେ ମାର୍କିନ ଗୋଷ୍ଠୀଠାରୁ ଶିକ୍ଷା କରିଥିଲେ । କେଉଁ ସୁଦୂର କୋରିଆରେ ଯୁଦ୍ଧ ଲାଗିଲା, ଅଥଚ ଆମଦେଶର ଜନିଷ ପତ୍ର ଦର ନିଆଁ ଭଳି ବଢ଼ିଗଲା । ପୁଣି ଯେତେବେଳେ ଯୁଦ୍ଧ ବିରତିର ସମ୍ବାଦ ଆସିଲା ସେତେବେଳେ ଏମାନଙ୍କର ମହା ଭାବନା ପଡ଼ିଗଲା । ଯୁଦ୍ଧ ଭୂଇଁରୁ ଦୂରରେ ରହି ଯୁଦ୍ଧଜନିତ ଚଢ଼ା ଦରର ସୁଯୋଗ ନେଇ ମୁନାଫା ବୃଦ୍ଧି କରିବା ହେଉଛି ଏମାନଙ୍କର ନୀତି । ଏଣୁ ଯୁଦ୍ଧ ଭିତରେ ଓ ପରେ ଭାରତୀୟ ପୁଞ୍ଜିବାଦୀ ଶିଳ୍ପର ଦ୍ରୁତ ପ୍ରସାର ଏବଂ କ୍ରମବର୍ଦ୍ଧମାନ ଉତ୍ପାଦନ, ଏ ଦେଶର ପୁଞ୍ଜିପତିମାନଙ୍କୁ ଏସିଆ ଓ ଅନ୍ୟାନ୍ୟ ଦେଶର ବଜାର ଦଖଲ କରିବା ପାଇଁ ବାଧ୍ୟ କରୁଛି । ଯୁଦ୍ଧ ଶେଷ ହେବାର ଠିକ ପୂର୍ବରୁ ଭାରତୀୟ ଧନିକ ଗୋଷ୍ଠୀର ମୁଖପାତ୍ର ଶେଠ ଜି: ଡି: ବିରଲା କହିଥିଲେ—" **India must expand her markets not only domestically but throughout the world, We aim to capture the Japanese markets after the war (A. B. Patrika dated 20th July 1945 )**

ଅର୍ଥାତ୍ — ଭାରତକୁ କେବଳ ନିଜ ଦେଶରେ ନୁହେଁ ସାରା ପୃଥିବୀରେ ବଜାର ବିସ୍ତାର କରିବାକୁ ହେବ । ଯୁଦ୍ଧ ପରେ ଜାପାନୀ ବଜାର କରଗତ କରିବା ଆମର ଲକ୍ଷ୍ୟ ।

(ଅମୃତ ବଜାର ପତ୍ରିକା ତା ୨୦। ୭। ୪୫

ଯୁଦ୍ଧ ପରେ ଏହି ଉକ୍ତିର ସତ୍ୟତା ପ୍ରମାଣିତ ହେଉଛି । ଭାରତର ମାଲ ରପ୍ତାନୀ ପରିମାଣ ଦକ୍ଷିଣ-ପୂର୍ବ ଏସିଆ ଓ ଆଫ୍ରିକା ବଜାରରେ ଗତ କେତେକ ବର୍ଷ ମଧ୍ୟରେ ଯଥେଷ୍ଟ ବୃଦ୍ଧି

ପାଇଛନ୍ତି, ଏବଂ ପୂର୍ବାପେକ୍ଷା ବ୍ରିଟେନକୁ ବେଶି ପରିମାଣରେ ଜିନିଷ ରପ୍ତାନୀ କରାଯାଇଛି । ଯେଉଁ ଦେଶର ଲକ୍ଷ ଲକ୍ଷ ଜନସାଧାରଣ ଅର୍ଦ୍ଧନଗ୍ନ, ସେଠାରେ ଶିକ୍ଷିତ ସଂପ୍ରଦାୟ ମାଞ୍ଚେଷ୍ଟର ଧୋତିର ବିଳାସିତା କରି ଦେଶର ଅର୍ଥ ବିଦେଶକୁ ପଠାଉଛନ୍ତି ବୋଲି ଅଭିଯୋଗ ହେଉଥିଲା, ସେହି ଦେଶର ବମ୍ବେ ବନ୍ଦରରୁ ସୂତା ଓ ଲୁଗା ମାଞ୍ଚେଷ୍ଟରକୁ ରପ୍ତାନୀ ହେଉଛି ଏବଂ ବିଦେଶର ଅର୍ଥ ଦେଶକୁ ଆସୁଛି, ଅଥଚ ଏବେ ବି ଭାରତବାସୀଙ୍କର ଅର୍ଦ୍ଧନଗ୍ନତା ଘୁଞ୍ଚୁନାହିଁ । ଏ ଅଭାବ କେବେ ଦୂର ହେବ ତା କହିବା କଠିନ । ଭାରତୀୟ ପୁଞ୍ଜିପତିମାନଙ୍କର ପ୍ରଭାବ ପ୍ରତିପତ୍ତି ଆଜି ସାରା ଏସିଆ ଓ ଆଫ୍ରିକା ବଜାରରେ ଅତି ଦ୍ରୁତ ଗତିରେ ପ୍ରସାର ଲାଭ କରୁଛି । ବିରଲାର ଇଉନାଇଟେଡ଼ କମର୍ସିଆଲ ବ୍ୟାଙ୍କର ଶାଖା ସ୍ଥାପିତ ହୋଇଛି ଦକ୍ଷିଣ ପୂର୍ବ ଏସିଆର ବିଭିନ୍ନ ଦେଶରେ । ପଶ୍ଚିମ ଇଉରୋପର ପୁଞ୍ଜିବାଦୀ ଦେଶମାନଙ୍କ ସହ ଭାରତୀୟ ପୁଞ୍ଜିପତି ଶ୍ରେଣୀର ପ୍ରତିଯୋଗିତା ଆଜି ଅନିବାର୍ଯ୍ୟ ହୋଇପଡ଼ୁଛି । ଅବଶ୍ୟ ଇଙ୍ଗ-ମାର୍କିନ ଏକଚାଟିଆ ପୁଞ୍ଜିକୁ ହଟାଇ ଏସିଆ ବଜାରରେ ଆଧିପତ୍ୟ ବିସ୍ତାର କରିବାର ସ୍ୱପ୍ନ କେବେ ସଫଳ ହେବକି ନାହିଁ—ତା ଠିକ କରିବା ଅତି କଠିନ । ତେବେ ଏତିକି କୁହାଯାଇପାରେ ଯେ ଭାରତୀୟ ପୁଞ୍ଜିବାଦ ଏତେ ଦୁର୍ବଳ ନହୋଇ ଅନ୍ତତଃ ଯଦି, ବ୍ରିଟିଶ ପୁଞ୍ଜିର ସମକକ୍ଷ ହୋଇଥାଆନ୍ତା ଏବଂ ନେହେରୁଜୀଙ୍କ ହାତରେ ଅନ୍ୟ ସାମ୍ରାଜ୍ୟବାଦୀ ରାଷ୍ଟ୍ରମାନଙ୍କଭଳି ସୁଦୃଢ଼ ଓ ଶକ୍ତିଶାଳୀ ସୈନ୍ୟବାହିନୀ ମହଜୁତ ଥାଆନ୍ତା ତାହାହେଲେ ବ୍ରିଟେନ ଓ ଆମେରିକା ସାଥିରେ ତାଳ ଦେବାକୁ ବେଶି କଷ୍ଟ ହୁଅନ୍ତା ନାହିଁ ଏବଂ ଏହି ପ୍ରତି-ଯୋଗିତା ନିଶ୍ଚୟ ଆଜି ଏକ ପୁଞ୍ଜିବାଦୀ ଯୁଦ୍ଧରେ ପରିଣତ ହୁଅନ୍ତା ଏବଂ ଆଜିର ଶାନ୍ତିବାଦୀ ନେହେରୁ "ଏସିଆ ହିଟଲର"

ଭୂମିକାରେ ଅବତୀର୍ଣ୍ଣ ହୁଅନ୍ତେ'। ଆମର ସୌଭାଗ୍ୟ ଯେ ନେହେରୁଜୀଙ୍କ ପୁଞ୍ଜି ଓ ସୈନ୍ୟବାହିନୀ ଆନ୍ତର୍ଜାତିକ ଦଉଡ଼-କଷାକଷି କ୍ଷେତ୍ରରେ ଏତେ ଶକ୍ତିଶାଳୀ ହୋଇ ପାରି ନାହିଁ।

## ଦୁର୍ବଳ ପୁଞ୍ଜିବାଦୀ ରାଷ୍ଟ୍ର ନିକଟରେ ଶାନ୍ତିର ରାଜନୀତି ସବୁଠାରୁ ଶ୍ରେୟସ୍କର

ଏଠାରେ ଗୋଟିଏ କଥା ମନେ ରଖିବା ଦରକାର। ପୁଞ୍ଜିବାଦୀ ଦେଶର ଆଭ୍ୟନ୍ତରୀଣ ଅର୍ଥନୈତିକ ସଂକଟ, ଯୁଦ୍ଧର ଯେପରି ମୂଳକାରଣ ପୁଣି ସେହି ସଂକଟରୁ ରକ୍ଷା ପାଇବା ପାଇଁ ବହୁବିଧ ଉପାୟ ମଧ୍ୟରୁ ଯୁଦ୍ଧ ମଧ୍ୟ ଗୋଟିଏ ଉପାୟ। କିନ୍ତୁ ଭିନ୍ନ ଭିନ୍ନ ଉପାୟର ପ୍ରୟୋଗ ଭିନ୍ନ ଭିନ୍ନ ଅବସ୍ଥା ଓ ସମୟ ବିଶେଷରେ ନିର୍ଦ୍ଧାରିତ ହୁଏ। ଦୁନିଆର ବିଭିନ୍ନ ପୁଞ୍ଜିବାଦୀ ଦେଶ ରାଜନୈତିକ ଓ ଅର୍ଥନୈତିକ ଦିଗରୁ ସମାନ ସ୍ତରରେ ନାହାନ୍ତି। କେଉଁ ଦେଶର ଉତ୍ପାଦିକା ଶକ୍ତି ଖୁବ୍ ଉନ୍ନତ, କେଉଁଠି ତାହା ଅନୁନ୍ନତ, କେଉଁଠି ମୂଳ ଶିଳ୍ପର ଗଠନ ପାଇଁ ପୁଞ୍ଜିର ଅଭାବ ପୁଣି କେଉଁଠି ଉଦବୃତ୍ତ ପୁଞ୍ଜିର ନିୟୋଗ ଓ ଉତ୍ପାଦିତ ଜିନିଷ ପତ୍ରର ବିକ୍ରୟ ପାଇଁ ବଜାର ଦରକାର। ଏଣୁ ବିଶେଷ ବିଶେଷ ଅବସ୍ଥା ଉପରେ ପୁଞ୍ଜିବାଦୀ ଦେଶର ଯୁଦ୍ଧ ବା ଶାନ୍ତି-ରାଜନୀତି ନିର୍ଭରକରେ। ଏହାର ଦୃଷ୍ଟାନ୍ତ ଇତିହାସରେ ବିରଳ ନୁହେଁ। ଦ୍ୱିତୀୟ ମହାଯୁଦ୍ଧ ଆରମ୍ଭ ହେବାର ଠିକ୍ ପୂର୍ବରୁ ଏବଂ ଏପରିକି ଏହାର ପ୍ରାରମ୍ଭରୁ ଆମେରିକା ଯୁଦ୍ଧକୁ ଏଡ଼ି ବ୍ୟବସାୟ ବାଣିଜ୍ୟ କାରବାର ନୀତି ଗ୍ରହଣ କରିଥିଲା। କିନ୍ତୁ ସେହି ଆମେରିକା ଆଜି ଅର୍ଥନୈତିକ ସଂକଟରୁ ରକ୍ଷାପାଇବା ପାଇଁ ସବୁଠାରୁ ବେଶି ଯୁଦ୍ଧପ୍ରିୟ ହୋଇଉଠିଛି। ପୁଣି ଯେଉଁ ବ୍ରିଟେନ ବିଗତ ଦୁଇଟି ମହାଯୁଦ୍ଧର ପୁରୋଧା ଥିଲା, ସେ କୋରିଆ ଓ

ଇଣ୍ଡୋଚୀନ ଯୁଦ୍ଧକୁ ବିଶ୍ୱଯୁଦ୍ଧରେ ପରିଣତ କରିବା ପାଇଁ ଆମେରିକାକୁ ସାହାଯ୍ୟ ଦେବାରେ ପ୍ରସ୍ତୁତ ହେଲ ନାହିଁ । ଯୁଦ୍ଧ ବିଧ୍ୱସ୍ତ ବର୍ତ୍ତମାନ ନିକଟରେ ଯୁଦ୍ଧ ଅପେକ୍ଷା ପୁନର୍ଗଠନ ଓ ବ୍ୟବସାୟ ହେଉଛି ସର୍ବାପେକ୍ଷା ଶ୍ରେୟସ୍କର ।

ଭାରତ, ଓ ଏଶିଆ-ଆଫ୍ରିକାର ନୂତନ ସ୍ୱାଧୀନ ପୁଞ୍ଜିବାଦୀ ଦେଶମାନଙ୍କର ଉଦ୍‌ବୃତ୍ତ ଉତ୍ପାଦିକା ଶକ୍ତି ବ୍ରିଟେନ ଓ ଆମେରିକା ତୁଳନାରେ ଯଥେଷ୍ଟ କମ । ଏଣୁ ଏହି ଦୁର୍ବଳତାକୁ ଦୂର କରିବାକୁ ହେଲେ ଗୁରୁ ଶିଳ୍ପର ପ୍ରତିଷ୍ଠା ଏକାନ୍ତ ପ୍ରୟୋଜନ ! ଦେଶରେ ଗୁରୁଶିଳ୍ପ ପ୍ରତିଷ୍ଠା କରି ଅନ୍ୟାନ୍ୟ ପୁଞ୍ଜିବାଦୀ ଦେଶ ସହ ପ୍ରତିଯୋଗିତା କରି ବିଦେଶୀ ବଜାର ଦଖଲ କରିବା ଏବଂ ସଙ୍ଗେ ସଙ୍ଗେ ନିଜ ଦେଶର ଆଭ୍ୟନ୍ତରୀଣ ବଜାର (Internal Market) ଯଥା ସମ୍ଭବ ବିଦେଶୀ ପ୍ରତିଯୋଗିତା କବଳରୁ ନିରାପଦ ରଖିବା ପାଇଁ ଏ ଦେଶର ପୁଞ୍ଜିପତିମାନେ ମୁଖ୍ୟତଃ ପରିକଳ୍ପନା ଗ୍ରହଣ କରିଛନ୍ତି । ବୈଦେଶିକ ବାଣିଜ୍ୟ କରିଆରେ ଦେଶରେ ଗୁରୁଶିଳ୍ପର ଉନ୍ନତି ସାଧନ ଉପରେ ଗୁରୁତ୍ୱ ଆରୋପ କରାଯାଇଛି । ବର୍ତ୍ତମାନ ପ୍ରାଥମିକ ଅବସ୍ଥାରେ ଯୁଦ୍ଧ, ଭାରତର ଶିଳ୍ପୋନ୍ନତିରେ ପ୍ରତିବନ୍ଧକ ହେବ । ଯୁଦ୍ଧ ହେଲେ ଦେଶରେ ମୁଦ୍ରାସ୍ଫୀତି ଓ ଶିଳ୍ପ-ସଂକଟ ଦେଖା ଦେବ । ଶିଳ୍ପ ପ୍ରତିଷ୍ଠା ପାଇଁ ବିଦେଶରୁ ଆବଶ୍ୟକୀୟ ଯନ୍ତ୍ରପାତି ଆଣିବା ଅସମ୍ଭବ ହେବ । ଯୁଦ୍ଧର ଚାହିଦା ପୂରଣ କରିବାକୁ ପାଇଁ ପରିକଳ୍ପନା ଅନୁଯାୟୀ ଶିଳ୍ପ ଗଢି ଉଠିବ ନାହିଁ । ଏଣୁ ଦେଶରେ ଶିଳ୍ପର ବୁନିଆଦ ଗଢିବାକୁ ହେଲେ ଶାନ୍ତିର ପରିବେଶ ଦରକାର, ଏବଂ ଭବିଷ୍ୟତରେ ଯେପରି ଅର୍ଥନୈତିକ ସଂକଟ ଦେଖାନଦିଏ କିମ୍ବା ବଜାରର ଅଭାବ ନହୁଏ ସେଥିପାଇଁ ଏଶିଆ ଓ ଆଫ୍ରିକାର ବଜାର ଗୁଡ଼ିକୁ ଧୀରେ ଧୀରେ ଦଖଲ

କରିବା ଦରକାର । ଦେଶର ଶିଳ୍ପୋନ୍ନତିର ପନ୍ଥା ଛୁଟେ ଏବଂ ନିଜ ଦେଶରେ ସଂକୁଚିତ ବଜାର ଯୋଗୁ ଶିଳ୍ପୋନ୍ନତିର ପଥ ଯେପରି ରୁଦ୍ଧ ନହୁଏ ସେଥିପାଇଁ ଆଞ୍ଚଳିକ ଭିତ୍ତିରେ ଏସିଆ ଓ ଆଫ୍ରିକାର ଦେଶମାନଙ୍କ ସହ ସୌହାର୍ଦ୍ଦ୍ୟପୂର୍ଣ୍ଣ ସଂପର୍କ ପ୍ରତିଷ୍ଠା କରିବାରେ ନେହେରୁ ସରକାର ସଦାସର୍ବଦା ଚେଷ୍ଟିତ । ଅନ୍ୟ ଦିଗରେ ସୋଭିଏତ ସମାଜର ଅଭ୍ୟୁତ୍ଥାନ ଭାରତର ଶିଳ୍ପ ପ୍ରସାର ଦିଗରେ ଏକ ସୁବର୍ଣ୍ଣ ସୁଯୋଗ **ଆଣି** ଦେଇଛି । ସାମ୍ରାଜ୍ୟବାଦୀ ଦେଶମାନେ ସାହାଯ୍ୟ ଦେଲାବେଳେ ନାନା ପ୍ରକାର ରାଜନୈତିକ ସର୍ତ୍ତ ଓ ଦୁରଭିସନ୍ଧି ରଖି ଥାଆନ୍ତି । କିନ୍ତୁ ସୋଭିଏତ ଦେଶ ବିନା ସର୍ତ୍ତରେ ସାହାଯ୍ୟ ଦିଏ ବୋଲି ଭାରତ ସରକାର ଅନାୟାସରେ ସୋଭିଏତ ଦେଶ ନିକଟରୁ ସାହାଯ୍ୟ ନେଉଛି ଏବଂ ଏହା ଦ୍ୱାରା ଆମେରିକା ଓ ବ୍ରିଟେନ ଉପରେ ଚାପ ସୃଷ୍ଟି କରୁଛି ।

ଭାରତର କଂଗ୍ରେସ ରାଷ୍ଟ୍ର ନିଜର ଶ୍ରେଣୀ ଶୋଷଣକୁ ସୁସଂହତ କରିବା ଏବଂ ଏକ ଉନ୍ନତ ପୁଞ୍ଜିବାଦୀ ଦେଶ ହିସାବରେ ଗଢି ଉଠିବାପାଇଁ ମୂଳଶିଳ୍ପ ଗଠନ ଦିଗରେ ସଦାସର୍ବଦା ଚେଷ୍ଟିତ । ଇଙ୍ଗ-ମାର୍କିନ ସାମ୍ରାଜ୍ୟବାଦୀ ଗୋଷ୍ଠୀ ଏହିଦିଗରେ ଭାରତକୁ ସାହାଯ୍ୟ ଦେବା ପାଇଁ ପ୍ରସ୍ତୁତ ନୁହନ୍ତି । କାରଣ, ଏହା ଦ୍ୱାରା ଭବିଷ୍ୟତରେ ଭାରତ ଏମାନଙ୍କର ଏକ ବିପଜ୍ଜନକ ପ୍ରତିଦ୍ୱନ୍ଦ୍ୱୀ ହିସାବରେ ଦେଖା ଦେବ । ଏମାନେ ଭାରତକୁ ଏପର୍ଯ୍ୟନ୍ତ କେତେକ ଦିଗରେ ସାହାଯ୍ୟ କରିଥିଲେ ମଧ୍ୟ ମୂଳଶିଳ୍ପ ଗଠନ ଦିଗରେ ସାହାଯ୍ୟ କରି ନାହାନ୍ତି । ୧୯୪୮ ମସିହାରେ ଭାରତ ବ୍ରିଟେନଠାରୁ **Steel Plant** ପାଇ ପାରିଲା ନାହିଁ । କିନ୍ତୁ ଭାରତ ଯେତେବେଳେ ସୋଭିଏତଠାରୁ **plant** ଆଣିଲା ସେତେବେଳେ ବ୍ରିଟେନ କେବଳ ଅନୁଶୋଚନା କରିନାହିଁ, ପରେ **Steel Plant** ଦେବା ପାଇଁ ପ୍ରସ୍ତୁତ ହୋଇଛି ।

ଭାରତ କାଳେ ଇଙ୍ଗମାର୍କିନ ମେଣ୍ଟରୁ ଖୁଲିଯିବ ସେଥିପାଇଁ ଏମାନଙ୍କର ଏତେ ଅହେତୁକ ଭୟ । ୧୯୫୫ରେ ସୋଭିଏତ ନେତୃବୃନ୍ଦଙ୍କ ଭାରତ ଭ୍ରମଣ ପରେ ଆମେରିକାରେ ଯେଉଁ ପ୍ରତିକ୍ରିୟା ସୃଷ୍ଟି ହେଲା ତା ଫଳରେ ଭାରତବର୍ଷକୁ ମାର୍କିନ ପୁଞ୍ଜିର ସୁଅ ଛୁଟିଲା । ଭାରତ ପକ୍ଷରେ ଏପରି ସୁନ୍ଦର ପରିସ୍ଥିତି କେବଳ ସୋଭିଏତ ନେତୃବୃନ୍ଦ ପ୍ରତି ଅଭିନନ୍ଦନ ଓ ଶାନ୍ତିକଥା କହିବାଦ୍ୱାରା ସମ୍ଭବ ହୋଇଛି । ଏଣୁ ଗୋଟିଏ ଦିଗରେ ଶାନ୍ତି ବାଣୀ ପ୍ରଚାର କରି ଆନ୍ତର୍ଜାତିକ କ୍ଷେତ୍ରରେ ଦରକଷାକଷି କରିବା, ଭବିଷ୍ୟତରେ ବଜାର ଦଖଲର ପଥ ସୁଗମ କରିବା ଏବଂ ଅନ୍ୟଦିଗରେ ଶିଳ୍ପୋନ୍ନୟନ ଜରିଆରେ ଜାତୀୟ ପୁଞ୍ଜିବାଦୀ ବ୍ୟବସ୍ଥାକୁ ଶକ୍ତିଶାଳୀ କରିବା ସୋଭିଏତ ଦେଶସହ ସମ୍ପର୍କ ସ୍ଥାପନ କରି ନିଜକୁ ପ୍ରଗତି-ଶୀଳ ବୋଲାଇବା, ଶାନ୍ତି; ଅହିଂସା, ଜାତୀୟ ସ୍ୱାର୍ଥ ଓ ସାମାଜିକତନ୍ତ୍ରର ମୁଖାନ୍ତରାଳେ ବିପ୍ଳବୀ ଆନ୍ଦୋଳନକୁ ଦମନ କରିବା ହେଉଛି କଂଗ୍ରେସ ସରକାରର ପ୍ରଧାନ ଲକ୍ଷ୍ୟ ।

## ଆନ୍ତର୍ଜାତିକ କମ୍ୟୁନିଷ୍ଟ ଆନ୍ଦୋଳନ ପ୍ରତି ନେହେରୁଙ୍କ ଦୃଷ୍ଟିଭଙ୍ଗୀ

ବିଶ୍ୱଶାନ୍ତି-ଆନ୍ଦୋଳନକୁ ଶକ୍ତିଶାଳୀ କରିବା ନେହେରୁଙ୍କ ଶାନ୍ତିନୀତିର ପ୍ରକୃତ ଉଦ୍ଦେଶ୍ୟ ନୁହେଁ, ବରଂ କୌଣସି ନା କୌଣସି ଦିଗରୁ ପ୍ରମାଣ କରିବା ଯେ ପୃଥିବୀରେ କମ୍ୟୁନିଷ୍ଟମାନେ ହିଁ ଯୁଦ୍ଧସୃଷ୍ଟି କରିବାକୁ ବ୍ୟଗ୍ର । ଚୀନ ଯାତ୍ରା ପୂର୍ବରୁ ୨୯-୯-୫୪ରେ ନେହେରୁ ଲୋକ ସଭାରେ ଆନ୍ତର୍ଜାତିକ ପରିସ୍ଥିତି ଓ ଭାରତର ବୈଦେଶିକ ନୀତି ସଂପର୍କରେ ଯେଉଁ ବକ୍ତୃତା ଦେଇଥିଲେ ସେଥିରୁ ତାଙ୍କ ମନୋଭାବ ସ୍ପଷ୍ଟ ହୁଏ । ମାନିଲା ଚୁକ୍ତି ସଂପର୍କରେ ନେହେରୁ

ବ୍ୟାଖ୍ୟା କରିବାକୁ ଯାଇଁ କହିଛନ୍ତି ଯେ ମାନିଲା ଚୁକ୍ତି ଓ SEATO (ଦକ୍ଷିଣ ପୂର୍ବ ଯୁଦ୍ଧ ମେଣ୍ଟ) କମ୍ୟୁନିଷ୍ଟ ଦେଶମାନଙ୍କ ପ୍ରତି ଭୟରୁ ଜନ୍ମ ନେଇଛି (ଅର୍ଥାତ୍—କମ୍ୟୁନିଷ୍ଟ ଦେଶମାନଙ୍କ ବିରୁଦ୍ଧରେ ଆକ୍ରମଣାତ୍ମକ ମନୋଭାବରୁ ନୁହେଁ) ବିଭିନ୍ନ ଦେଶର କମ୍ୟୁନିଷ୍ଟ ପାର୍ଟି ଓ କମ୍ୟୁନିଷ୍ଟ ଦେଶମାନଙ୍କ ସଂପର୍କରେ ନେହେରୁ ମତ ଦେଇଛନ୍ତି — If there was such a thing as a Communist Party in a country i.e. a national Communist Party that is a party wich has nothing to do with another country, that is a different matter. The difficulty comes in because that party in your country is intellectually and other wise tied up with other groups in another country and the other country might well utilise that for its advantage (cheers from Congress benches That is the fear that comes to all these South Eastern countries and others. Whether it is Burma, Thailand, or any other country with the result unfortunately, that problems which could be considered by themselves get with these extraneous issues and different types of reaction are created."

(Hindustan Standard September 30, 1954)

ଅର୍ଥାତ୍ ପେ. ନେହେରୁ ଏଠାରେ ସଂକ୍ଷେପରେ କହିବାକୁ ଚାହିଁଛନ୍ତି ଯେ କମ୍ୟୁନିଷ୍ଟ ପାର୍ଟି ଗତ, · ମତ ନାହିଁ, କିନ୍ତୁ ଆନ୍ତର୍ଜାତିକ କମ୍ୟୁନିଷ୍ଟ ଆନ୍ଦୋଳନ ସହ ସଂପର୍କ ରଖନାହିଁ । ଜାତୀୟ କମ୍ୟୁନିଷ୍ଟ ପାର୍ଟି ଗତ, ଦେଶର ସ୍ୱାର୍ଥ ଦେଖେ (ଅର୍ଥାତ୍ ପଣ୍ଡିତ ନେହେରୁ

ପାହାର ସ୍ୱାର୍ଥ ଦେଖୁଛନ୍ତି ), ଦେଶର ଗଣତାନ୍ତ୍ରିକ ବ୍ୟବସ୍ଥାର ପୋଷାକର (ଅର୍ଥାତ୍-ବ୍ରିଟେନର ବୁର୍ଜୁଆ ପାର୍ଲିଆମେଣ୍ଟାରୀ ଗଣତନ୍ତ୍ରର ଢାଂଚରେ ଯେଉଁ ଗଣତାନ୍ତ୍ରିକ ବ୍ୟବସ୍ଥା ଗଢ଼ାଯାଇଛି ।)— କୌଣସି ଆପତ୍ତି ନାହିଁ । ନେହେରୁ ମିଥ୍ୟାକଥା କହୁ ନାହାନ୍ତି । ବାସ୍ତବିକ ଆଜି ଉପରେ ବର୍ମା, ଥାଇଲଣ୍ଡ ଓ ଦକ୍ଷିଣପୂର୍ବ ଏସିଆର ପୁଞ୍ଜିବାଦୀ, ସାମନ୍ତବାଦୀ ଦେଶମାନେ ଇଙ୍ଗ୍-ମାର୍କିନ ଫେଣ୍ଟ ଆଡ଼କୁ ଚଳି ଯାଉଛନ୍ତି ।

ଆନ୍ତର୍ଜାତିକ କମ୍ୟୁନିଷ୍ଟ ଆନ୍ଦୋଳନ ସଂପର୍କରେ ପଣ୍ଡିତ ନେହେରୁ ବିଶେଷଜ୍ଞ ଭଳି ମନ୍ତବ୍ୟ ପ୍ରକାଶ କରି କହୁଛନ୍ତି—

"In the old days there was the Commintern that international Communist organisation which was wound up sometime during the last war. Later come the comminform wich was, I suppose something of the old type in a different garb I think that these organisation and the activities that grow for the idea have certainly caused a good deal of apprehension and disturbance in various countries and nations. (Hindustan Standard, Sept. 30, 1954)

ନେହେରୁଙ୍କ କହିବାର ଉଦ୍ଦେଶ୍ୟ ହେଉଛି ଯେ ଆନ୍ତର୍ଜାତିକ ଶ୍ରମିକ ଶ୍ରେଣୀର ସଙ୍ଗଠନ 'କୋମିନଫର୍ମ' ଅତି ଏସ୍ୟାନକ । ବିଭିନ୍ନ ଦେଶରେ ସନ୍ଦେହ ଓ ଭୟ ସୃଷ୍ଟି ହେବା ମୂଳରେ ଏହି ବିପର୍ଜ୍ଜନକ 'କୋମିନଫର୍ମ' ରହିଛି । ଏହି ସମସ୍ତ ବିବୃତିରୁ ପରିଷ୍କାର ହେଉଛି ଯେ ଏହି କୋମିନଫର୍ମ କବଳରୁ ରକ୍ଷା ପାଇବା ପାଇଁ ବର୍ମା, ଥାଇଲଣ୍ଡ ଦକ୍ଷିଣପୂର୍ବ ଏସିଆର ଅନ୍ୟାନ୍ୟ ଦେଶ ଓ ନେତା ପଣ୍ଡିତ

ନେହେରୁ ଇଙ୍ଗ-ମାର୍କିନ ମେଣ୍ଟର ବାହୁଚ୍ଛାୟା ତଳେ ଆଶ୍ରୟ ନେବାକୁ ବାଧ୍ୟ ହେଉଛନ୍ତି ।

## ନେହେରୁଙ୍କୁ ସ୍ୱାଗତ କରି ମାର୍କିନ ଯୁଦ୍ଧ ମେଣ୍ଟକୁ ଦୁର୍ବଳ କରିବା ସମାଜବାଦୀ ଶିବିରର ଉଦ୍ଦେଶ୍ୟ

ଜନସାଧାରଣଙ୍କ ମନରେ ପ୍ରଶ୍ନ ଉଠିବା ସ୍ୱାଭାବିକ, ଯଦି ନେହେରୁ ଶାନ୍ତିବାଦୀ ନୁହନ୍ତି, ତାହାହେଲେ ସୋଭିଏତ ଦେଶମାନେ ତାଙ୍କୁ ଏତେ ପ୍ରଶଂସା କରନ୍ତି କାହିଁକି । ନେହେରୁ ଭାରତୀୟ ପୁଞ୍ଜିବାଦୀ ରାଷ୍ଟ୍ରର ପ୍ରଧାନମନ୍ତ୍ରୀ । ତଥାପି ପିକିଂ ଓ ମସ୍କୋରେ ପହଞ୍ଚିବା କ୍ଷଣି ଲକ୍ଷ ଲକ୍ଷ ନରନାରୀ ତାଙ୍କୁ ସମ୍ବର୍ଦ୍ଧନା ଜଣାଇଛନ୍ତି । ଏହି ପ୍ରଶ୍ନ ଉପରେ ନେହେରୁ ସମାଜବାଦୀ ବୋଲି ଜନସାଧାରଣଙ୍କ ମଧ୍ୟରେ ଭ୍ରାନ୍ତ ଧାରଣା ସୃଷ୍ଟି ହୋଇଛି, ଯେଉଁପରି ତଥାକଥିତ ବାମପନ୍ଥୀ ଦଳଗୁଡ଼ିକ ପାଗଳାମିର ନିଦର୍ଶନ ସ୍ୱରୂପ ନାନା ଉଦ୍ଭଟ ମନ୍ତବ୍ୟ ପ୍ରକାଶ କରୁଛନ୍ତି । କମ୍ୟୁନିଷ୍ଟ ପାର୍ଟିର ନେତାମାନେ ଦିନକେ ଗୋଟିଏ ପ୍ରକାର କଥା ପ୍ରକାଶ କରନ୍ତି । ଜଣକ କଥାରେ ଅନ୍ୟ ଜଣର ସାମଞ୍ଜସ୍ୟ ନାହିଁ । ଆଜି ଯାହା କହୁଛନ୍ତି କାଲି ତାହା ଭୁଲ୍ ହୋଇଗଲା ବୋଲି କହୁଛନ୍ତି । ତେବେ ଗୋଟିଏ କଥାରେ ସେମାନେ ଏକମତ— ନେହେରୁଙ୍କ ପଛରେ ଗୋଟିଏ 'ଶାନ୍ତିବାଦୀ' ମୋହର ମାରି ଦେଇ ନିଶ୍ଚିନ୍ତ ।

ଆନ୍ତର୍ଜାତିକ କ୍ଷେତ୍ରରେ ସୋଭିଏତ ରୁଷ ଆଦି ସମାଜବାଦୀ ଦେଶମାନେ ନେହେରୁଙ୍କୁ ପ୍ରଶଂସା ଓ ସମର୍ଥନ କରନ୍ତି ବୋଲି ଭାରତୀୟ ଜନସାଧାରଣ ଠିକ୍ ସେହି କଥାକୁ ଅନୁସରଣ କରିବେ

ଏଥିରେ ଯୁକ୍ତିସଙ୍ଗତ କାରଣ ନାହିଁ । ସୋଭିଏତର ବୈଦେଶିକ ନୀତି ସମ୍ମୁଖରେ ଯେଉଁ ସମସ୍ୟା ଭାରତୀୟ ଜନସାଧାରଣଙ୍କ ମୁକ୍ତିଆନ୍ଦୋଳନ ସମ୍ମୁଖରେ ଅବିକଳ ସେହି ସମସ୍ୟା ନୁହେଁ । ବିଶ୍ୱ ପୁଞ୍ଜିବାଦକୁ ଉଚ୍ଛେଦ କରିବା, ଦେଶେ ଦେଶେ ପୁଞ୍ଜିବାଦକୁ ଉଚ୍ଛେଦ କରି ଜନସାଧାରଣଙ୍କ ବିପ୍ଳବୀ ଆନ୍ଦୋଳନକୁ ସଫଳ କରିବା ଏବଂ ସେହି ଉଦ୍ଦେଶ୍ୟରେ ମାର୍କିନ ଯୁଦ୍ଧମେଣ୍ଟକୁ କ୍ରମାଗତ ଦୁର୍ବଳ କରିବା ହେଉଛି ସୋଭିଏତ ବୈଦେଶିକ ନୀତିର ପ୍ରକୃତ ଉଦ୍ଦେଶ୍ୟ । ଅପର ପକ୍ଷରେ ପୁଞ୍ଜିବାଦୀ ଶାସନ ବ୍ୟବସ୍ଥାର ଉଚ୍ଛେଦ ସାଧନ କରି ଭାରତୀୟ ଜନସାଧାରଣଙ୍କ ବିପ୍ଳବକୁ ସାଫଲ୍ୟମଣ୍ଡିତ କରିବା ଏବଂ ଦେଶରେ ଶ୍ରମିକମାନଙ୍କ ଗଠନ କରିବା ଏବଂ ଭାରତବର୍ଷକୁ ପୁରାପୂରି ସାମ୍ରାଜ୍ୟବାଦୀ ଯୁଦ୍ଧ ଶିବିରରୁ ବିଚ୍ଛିନ୍ନ କରିବା ହେଉଛି ଭାରତୀୟ ଜନସାଧାରଣଙ୍କ ସମ୍ମୁଖରେ ପ୍ରଧାନ ସମସ୍ୟା । ଏଣୁ ସୋଭିଏତ ଯେଉଁ ବିଷୟରେ ଚିନ୍ତା କରେ ଆମ ଦେଶରେ ଲୋକଙ୍କୁ ଯେ ଠିକ୍ ସେହି ବିଷୟରେ ଚିନ୍ତା କରିବାକୁ ହେବ ଏହା ଭ୍ରମ ଧାରଣା । ଭାରତୀୟ ଜନତାର ମୁକ୍ତି ଆନ୍ଦୋଳନ, ସୋଭିଏତ ବୈଦେଶିକ ନୀତି ସମ୍ମୁଖରେ ଏକମାତ୍ର ସମସ୍ୟା ନୁହେଁ । କାରଣ ବିପ୍ଳବର ଦାୟିତ୍ୱ ଦେଶର ଜନସାଧାରଣଙ୍କ ଉପରେ ନିର୍ଭର କରେ । ଏଣୁ ଉଦ୍ଦେଶ୍ୟ ସମାନ ହେଲେବି କର୍ମକ୍ଷେତ୍ର ଓ କର୍ମ-ନୀତିରେ ପାର୍ଥକ୍ୟ ରହିଛି । ଏଠାରେ ଆଉ ଏକ ବିଷୟ ଉଲ୍ଲେଖ-ଯୋଗ୍ୟ । ସୋଭିଏତର ରାଷ୍ଟ୍ରନୀତି ଓ ଆନ୍ତର୍ଜାତିକ ଶ୍ରମିକଶ୍ରେଣୀର ଆନ୍ଦୋଳନ-ନୀତି ସମାନ ନୁହେଁ । ଯଦ୍ୟପି ପ୍ରତ୍ୟେକ ପ୍ରତ୍ୟେକଙ୍କୁ କର୍ମକ୍ଷେତ୍ରରେ ସହଯୋଗ କରନ୍ତି, ତଥାପି କର୍ମନୀତିରେ ପାର୍ଥକ୍ୟ ରହିଛି । ଯେଉଁମାନେ ଏ ପାର୍ଥକ୍ୟ ଦେଖି ନପାରନ୍ତି ସେମାନେ ବୁଝିବାକୁ ଅକ୍ଷମ— କାହିଁକି ସୋଭିଏତ ରାଷ୍ଟ୍ର ଭାରତୀୟ ପୁଞ୍ଜିବାଦୀ

ରାଷ୍ଟ୍ରର ପ୍ରତିଷ୍ଠା ଦିବସରେ ଶୁଭେଚ୍ଛା ବାଣୀ ପଠାନ୍ତୁ ଏବଂ ନେହେରୁଙ୍କୁ ସମର୍ଥନ କରନ୍ତୁ ।

ମାର୍କିନ ସାମ୍ରାଜ୍ୟବାଦ, ସୋଭିଏତ ଓ ଚୀନ ବିରୁଦ୍ଧରେ ଯୁଦ୍ଧ ପ୍ରସ୍ତୁତି ପାଇଁ ବିଭିନ୍ନ ପୁଞ୍ଜିବାଦୀ ଦେଶଙ୍କୁ ଏକତ୍ରିତ କରି ସାରା ଦୁନିଆବ୍ୟାପୀ ଯୁଦ୍ଧମେଣ୍ଟ ଗଢିବାକୁ ଉଦ୍ୟମ କରୁଛି । କାରଣ ସୋଭିଏତ, ଚୀନ ଓ ଦୁନିଆର ଶାନ୍ତିକାମୀ ଜନସାଧାରଣଙ୍କ ସହ ଶକ୍ତି ପରୀକ୍ଷାରେ ମାର୍କିନ ସାମ୍ରାଜ୍ୟବାଦ ନିଜେ ଛିଡ଼ା ହେବାର ସାହସ ନାହିଁ । ସେଥିପାଇଁ ଅନ୍ୟାନ୍ୟ ପୁଞ୍ଜିବାଦୀ ଦେଶଙ୍କୁ ନେଇ ସେ ମେଣ୍ଟ ଗଢିବାକୁ ଚାହୁଁଛି । କିନ୍ତୁ ପୁଞ୍ଜିବାଦର ନିଜସ୍ୱ ଅନ୍ତର୍ବିରୋଧ ଯୋଗୁଁ ଏ ଉଦ୍ୟମ ଅଦ୍ୟାବଧି ଫଳପ୍ରସୂ ହୋଇ ପାରିନାହିଁ । ଯଦି ମାର୍କିନ ସାମ୍ରାଜ୍ୟବାଦୀମାନେ ସମସ୍ତ ପୁଞ୍ଜିବାଦୀ ଦେଶଙ୍କୁ ଏକାଠି କରିବାରେ ସକ୍ଷମ ହୁଅନ୍ତି ତେବେ ବିଶ୍ୱ ଯୁଦ୍ଧ ଅନିବାର୍ଯ୍ୟ । ସମଗ୍ର ବିଶ୍ୱ ଯୁଦ୍ଧନିଆଁରେ ଧ୍ୱଂସ ପାଇଯିବ । ଏଣୁ ସୋଭିଏତ ଚୀନ ଏବଂ ଶାନ୍ତି ଶିବିର ଅନ୍ତର୍ଭୁକ୍ତ ପ୍ରତ୍ୟେକ ରାଷ୍ଟ୍ର ସମ୍ମୁଖରେ ଆଜି ପ୍ରଧାନ ସମସ୍ୟା ହେଉଛି ଯେ କୌଣସି ଉପାୟରେ ମାର୍କିନ ଯୁଦ୍ଧ ଚକ୍ରାନ୍ତକୁ ପରାସ୍ତ କରିବା । ପୁଞ୍ଜିବାଦୀ ସ୍ୱାର୍ଥ ଦ୍ୱନ୍ଦ୍ୱର ସୁଯୋଗ ନେଇ ଶାନ୍ତି ଶିବିର ମାର୍କିନ ସାମ୍ରାଜ୍ୟବାଦୀ ଗୋଷ୍ଠୀର ଏହି ଯୁଦ୍ଧ ମେଣ୍ଟ ଗଠନର ଉଦ୍ୟମକୁ ପଣ୍ଡ କରିବା ପାଇଁ ଆଜି ଚେଷ୍ଟା କରୁଛି । କିନ୍ତୁ କେଉଁ ଉପାୟରେ ଏ ଉଦ୍ଦେଶ୍ୟ ସାଧିତହେବ ? ପୃଥିବୀର ପ୍ରତ୍ୟେକ ପୁଞ୍ଜିବାଦୀ ଦେଶକୁ ସୋଭିଏତ ଓ ଚୀନ ଯଦି ପ୍ରତ୍ୟକ୍ଷଭାବେ ବିରୋଧ କରନ୍ତି ତାହେଲେ କଣ ମାର୍କିନ ଯୁଦ୍ଧମେଣ୍ଟ ଦୁର୍ବଳ ହେବ ? ବରଂ ବିପରୀତ ଫଳ ହେବ । ଅର୍ଥାତ ବିଭିନ୍ନ ପୁଞ୍ଜିବାଦୀ ଦେଶ ଯେଉଁମାନେ ନିଜ ନିଜର ପୁଞ୍ଜିର ସ୍ୱାର୍ଥ ସାଧନ ପାଇଁ ମାର୍କିନ ସାମ୍ରାଜ୍ୟବାଦର ବିରୋଧୀତା କରୁଛନ୍ତି ଏବଂ ଶାନ୍ତି ଶିବିର ସହ

ଶାନ୍ତି ପ୍ରତିଷ୍ଠା କରିବାକୁ ଚାହୁଁଛନ୍ତି ସେମାନେ ପ୍ରତ୍ୟକ୍ଷ ଭାବେ ମାର୍କିନ ଗୋଷ୍ଠୀରେ ଯୋଗ ଦେବେ ଏବଂ ସେପରି ଅନ୍ତର୍ବିରୋଧ ଥିଲେ ବି ସୋଭିଏତ ଓ ଚୀନ ବିରୁଦ୍ଧରେ ମୁକ୍ତ ମେଣ୍ଟ ଗଢିବେ । ଏହାଦ୍ୱାରା ଶାନ୍ତି ଆନ୍ଦୋଳନର ପରିସର ସଙ୍କୁଚିତ ହେବ, ଅଗ୍ରଗତି ବାଧାପ୍ରାପ୍ତ ହେବ ଏବଂ ବିଶ୍ୱ ପୁଞ୍ଜିବାଦର ଧ୍ୱଂସସାଧନା ପଛେଇଯିବ । ଏଣୁ ଏହା ଠିକ ପନ୍ଥା ନୁହେଁ । ଅନ୍ୟ ଦିଗରେ କ୍ଷୁଦ୍ର ଅନୁନ୍ନତ ପୁଞ୍ଜିବାଦୀ ଦେଶମାନଙ୍କ ସହ ଯଦି ବନ୍ଧୁତ୍ୱ ପ୍ରତିଷ୍ଠା କରାଯାଏ ଓ ସେମାନଙ୍କ ସହ ଅର୍ଥନୈତିକ ସମ୍ପର୍କକୁ ଦୃଢ଼ୀଭୂତ କରାଯାଏ ତାହେଲେ ପୁଞ୍ଜିବାଦୀ ମେଣ୍ଟ ଦୁର୍ବଳ ହେବାର ସମ୍ଭାବନା ରହିଛି, ଏହି ଉଦ୍ଦେଶ୍ୟରେ ଆଜ ସମାଜବାଦୀ ଶିବିର ନେହେରୁଙ୍କୁ ବ୍ୟବହାର କରୁଛି । ଏଣୁ ନେହେରୁଙ୍କ ପ୍ରତି ସୋଭିଏତର ନୀତି ପୁଞ୍ଜିବାଦର ରକ୍ଷଣ ପାଇଁ କିମ୍ବା ନେହେରୁଙ୍କ ତଥା କଥିତ ସମାଜତନ୍ତ୍ରର ପ୍ରଶଂସା ପାଇଁ ନୁହେଁ । ବିଶ୍ୱ ପୁଞ୍ଜିବାଦ-ବିରୋଧୀ ସଂଗ୍ରାମର ଏହା ଏକ କୌଶଳ । କିନ୍ତୁ ଦେଶରେ ଜନସାଧାରଣ ସେମାନଙ୍କ ମୁକ୍ତି ସଂଗ୍ରାମରେ ଏହି ନୀତି ବା କୌଶଳକୁ ପ୍ରୟୋଗ କରିବା ଅତି ମାରାତ୍ମକ । ସୋଭିଏତ ସହ ଭାରତବର୍ଷ ତଥା ପ୍ରତ୍ୟେକ ଦେଶର ଜନସାଧାରଣ ମାର୍କିନ ଯୁଦ୍ଧ ଚକ୍ରାନ୍ତକୁ ବ୍ୟର୍ଥ କରିବାକୁ ଚାହାନ୍ତି । କିନ୍ତୁ ଭାରତ କିମ୍ବା ଯେ କୌଣସି ଦେଶର ପୁଞ୍ଜିବାଦୀ ଶାସକ ଗୋଷ୍ଠୀକୁ ପ୍ରଶଂସା କରି ମାର୍କିନ ସାମ୍ରାଜ୍ୟବାଦ ବିରୁଦ୍ଧରେ ସେମାନଙ୍କୁ ବ୍ୟବହାର କରିବା ସମ୍ଭବ ନୁହେଁ । କାରଣ ପୁଞ୍ଜିବାଦୀ ରାଷ୍ଟ୍ର ଓ ଶାସକ ଗୋଷ୍ଠୀ ଜନତାର ଶକ୍ତି ଉପରେ ନିର୍ଭର କରି ସାମ୍ରାଜ୍ୟବାଦର ବିରୋଧୀତା କରୁନାହାଁନ୍ତି—କରୁଛନ୍ତି ନିଜର ପୁଞ୍ଜି ଓ ସାମରିକ ଶକ୍ତି ଉପରେ ନିର୍ଭର ରଖି । ମାର୍କିନ ସାମ୍ରାଜ୍ୟବାଦର ବିରୋଧୀତା କଲେ ବି ଭାରତୀୟ ଗଣସଂଗ୍ରାମକୁ ଦମନ କରିବାରେ

ଏ ଦେଶର କଂଗ୍ରେସୀ ପୁଞ୍ଜିବାଦୀ ସରକାର 'ଦୁର୍ବଳତା ପ୍ରକାଶ କରନାହିଁ । ଏଣୁ ମାର୍କିନ ଯୁଦ୍ଧ ଚକ୍ରାନ୍ତକୁ ପରାସ୍ତ କରିବାକୁ ହେଲେ ଭାରତର ଜନସାଧାରଣଙ୍କ ସମ୍ମୁଖରେ କର୍ତ୍ତବ୍ୟ ହେଉଛି ଇଙ୍ଗ-ମାର୍କିନ ସାମ୍ରାଜ୍ୟବାଦୀ ଗୋଷ୍ଠୀ ସହ ଭାରତର ସମସ୍ତ ସମ୍ପର୍କ ଛିନ୍ନ କରିବା ଏବଂ ଶାନ୍ତି ଶିବିରକୁ ପୂର୍ଣ୍ଣ ପ୍ରାଣରେ ସମର୍ଥନ କରିବା । କିନ୍ତୁ ଏ ଦିଗରେ ପ୍ରଧାନ ପ୍ରତିବନ୍ଧକ ଭାରତର ଶାସକ ଗୋଷ୍ଠୀ ଯେଉଁମାନେ 'ଶାନ୍ତି ଓ ନିରପେକ୍ଷତା'ର ଆବରଣ ତଳେ ନିଜର ଶ୍ରେଣୀ ସ୍ୱାର୍ଥ ସାଧନ ପାଇଁ ଇଙ୍ଗ-ମାର୍କିନ ଯୁଦ୍ଧ ଶିବିରକୁ ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବେ ଶକ୍ତିଶାଳୀ କରୁଛନ୍ତି । ଏଣୁ ଭାରତର ଶ୍ରମିକ ଜନସାଧାରଣଙ୍କ ଶାନ୍ତି ଓ ମୁକ୍ତି ଆନ୍ଦୋଳନର ସଫଳତା ନିର୍ଭର କରେ ପୁଞ୍ଜିବାଦୀ କଂଗ୍ରେସ ସରକାରର ପ୍ରଶସ୍ତିଗାନ ଉପରେ ନୁହେଁ, ତାହାର ଉଚ୍ଛେଦ ସାଧନ ଉପରେ ଏବଂ ଆଦର୍ଶଗତ ପ୍ରଭାବରୁ ଜନସାଧାରଣଙ୍କୁ ମୁକ୍ତ କରିବା ଉପରେ ।

## ପୁଞ୍ଜିପତି ଶ୍ରେଣୀର ଏକନାୟକତ୍ୱ

ଶାନ୍ତିବାଦୀ ନିରପେକ୍ଷ ବୈଦେଶିକ ନୀତିର ଢୋଲ ପିଟି ଫାଙ୍କା ସୁନାମ ପ୍ରଚାର ମାଧ୍ୟମରେ ଜନସାଧାରଣଙ୍କୁ ନିର୍ବୋଧ କରି ରଖି, ଗଣତନ୍ତ୍ର, ଜାତୀୟ ଐକ୍ୟ ସମାଜତାନ୍ତ୍ରିକ ଡାଞ୍ଚା ଆଦି ବଡ଼ ବଡ଼ କଥା କହି, ଦେଶର ଗଣତାନ୍ତ୍ରିକ ଆନ୍ଦୋଳନକୁ ବୁଲେଟରେ ଦମନ କରି, ନେହେରୁଜୀ ଭାରତରେ ପୁଞ୍ଜିପତି ଶ୍ରେଣୀର ଏକଚ୍ଛତ୍ର-ବାଦ ( ରାମ ରାଜ୍ୟ ! ) ପ୍ରତିଷ୍ଠା କରିବାକୁ ଚାହାନ୍ତି । ଦୀର୍ଘ ୧୪ ବରଷର କଂଗ୍ରେସୀ ଶାସନର ଇତିହାସ ଏହାହିଁ ସାକ୍ଷୀ ବହନ କରୁଛି । କାଗଜ କଲମରେ ସ୍ୱାଧୀନତା ଦିଆଯାଇଥିଲେ ମଧ୍ୟ ପ୍ରୟୋଗ କ୍ଷେତ୍ରରେ ତା'ର ବିରୁଦ୍ଧାଚରଣ କରାଯାଉଛି । ସମାଜ

ଜୀବନର ପ୍ରତ୍ୟେକ ସ୍ତରରେ ସ୍ୱାଧୀନ ବିକାଶରେ ଦେଶକୁ ଧୀରେ ଧୀରେ ରୁଦ୍ଧ କରି ଦିଆଯାଉଛି । ଅତ୍ୟାବଶ୍ୟକୀୟ ସର୍ଭିସ ନିୟନ୍ତ୍ରଣ ଆଇନ (**Essential Services Maintenance Act**) ଜାରି କରି ୧୪୪ ଧାରା ପ୍ରୟୋଗ କରି ଶ୍ରମିକ କର୍ମଚାରୀମାନଙ୍କର ଧର୍ମଘଟ କରିବା, ସଭା ସମିତି କରିବା ଏବଂ ସେମାନଙ୍କର ନ୍ୟାୟପୂର୍ଣ୍ଣ ଦାବୀଗୁଡ଼ିକୁ ପୂରଣ କରିବାର ଅଧିକାରକୁ ଦଳି ଦିଆଯାଉଛି । ଜାତୀୟ ନିରାପତ୍ତାର ଦୁଆ ଧରି ଅଟକ ଆଇନର ( **Preventive Detention Act** ) ମିଆଦ ପ୍ରତିବର୍ଷ ବୃଦ୍ଧି ପାଉଛି ଏବଂ ଅଧିକାଂଶ କ୍ଷେତ୍ରରେ ରାଜନୈତିକ କର୍ମୀମାନଙ୍କ ପ୍ରତି ଏହି ଆଇନ ପ୍ରୟୋଗ କରାଯାଇ ବିନା ବିଚାରରେ ସେମାନଙ୍କୁ ଜେଲ୍‌ଖାନାରେ ରଖାଯାଉଛି । ସମ୍ବାଦପତ୍ରର ସ୍ୱାଧୀନତାକୁ ଖର୍ବ କରାଯାଉଛି । ଜନସାଧାରଣଙ୍କର ମତ ଶୋଷଣ ଦ୍ୱାରା ସରକାରୀ ସ୍ୱାର୍ଥରେ ଯେପରି ଆଞ୍ଚ ନ ଆସେ ସେଥିପାଇଁ "ସଭା, ଶୋଭାଯାତ୍ରା ନିୟନ୍ତ୍ରଣ ଆଇନ" ତିଆରି ହେବାକୁ ଯାଉଛି । ବିରୋଧୀ ଦଳ କେଉଁଠି ସରକାର ଗଢ଼ିଲେ, ଶାନ୍ତି ଶୃଙ୍ଖଳାର ଦୋହାଇ ଦେଇ ତାକୁ ବଳପୂର୍ବକ ଭାଙ୍ଗି ଦିଆଯାଉଛି । ଜାତୀୟ ସଂହତି ନାମରେ ରାଜନୈତିକ ଦଳଗୁଡ଼ିକର କାର୍ଯ୍ୟକଳାପକୁ କୋହଳ ନିୟନ୍ତ୍ରଣ କରିବାପାଇଁ ଆଇନ ତିଆରି ହେବାକୁ ଯାଉଛି । ଅନ୍ୟ ଦିଗରେ ମିଳିଟାରୀ ବଜେଟରେ ପ୍ରତି ବର୍ଷ ବ୍ୟୟ ବରାଦ ବୃଦ୍ଧି ହେବାରେ ଲାଗିଛି, ଏବଂ ଆଧୁନିକ ଅସ୍ତ୍ର ଶସ୍ତ୍ରରେ ଭାରତୀୟ ସୈନ୍ୟବାହିନୀକୁ ସଜ୍ଜିତ କରାଯାଉଛି । ଗଣତନ୍ତ୍ର, ଭୋଟ ଅଧିକାର ଥିଲେ ମଧ୍ୟ ଧନୀକ ଶ୍ରେଣୀ ନାନା କୌଶଳ ସହକାରେ ରାଷ୍ଟ୍ରଶକ୍ତି ଉପରେ ନିଜର ଏକଚାଟିଆ ଅଧିକାର ପ୍ରତିଷ୍ଠା କରି ଆସିଛି । ପୁଞ୍ଜିବାଦୀ ଭୋଟ ଘଣ୍ଟାରେ ସଠିକ ଜନମତ ପ୍ରକାଶ ପାଏନା ଏବଂ ଏହି ସମାଜରେ

ଥିବା ନାନା ପ୍ରକାର ଅର୍ଥନୈତିକ ବାଧ୍ୟକତା ଭିତରେ ଜନସାଧାରଣଙ୍କ ସ୍ୱାଧୀନ ମତ ବିକଶିତ ହେବାର ସୁଯୋଗ ନଥାଏ । ଜୋର ଜୁଲୁମ କରି, ଭୟ ଦେଖାଇ ଅକାତରେ ଅର୍ଥ ବ୍ୟୟ କରି ଶାସନ କଳକୁ ପ୍ରୟୋଗ କରି ଧନୀକ ଗୋଷ୍ଠୀ ଏବଂ ତାଙ୍କର ରାଜନୈତିକ ନେତାମାନେ ଏପରି ଅବସ୍ଥା ସୃଷ୍ଟି କରନ୍ତି ଯେ ନିର୍ବାଚନ ଏକ ପ୍ରହସନରେ ପରିଣତ ହୁଏ । ଗୁଣ୍ଡାମି, ଜୁଆଚୋରିର ଫଳରେ ଆମେ ଦେଖିବାକୁ ପାଉ ଏପରି ଲୋକ ନିର୍ବାଚିତ ହୁଅନ୍ତି ଜନସାଧାରଣଙ୍କ ସହ ଯେଉଁମାନଙ୍କର କୌଣସି ପ୍ରତ୍ୟକ୍ଷ ସମ୍ପର୍କ ନାହିଁ । କଳେ ବଳେ କୌଶଳେ ଧନୀକଶ୍ରେଣୀ କ୍ଷମତା ଦଖଲକରି ଜାଣନ୍ତିବୋଲି ଫାସିବାଦୀ ରାଜନୈତିକ ଗୋୟେବଲସ କହିଥିଲେ—"A Party in power that cannot win an election is not a political party but a pack of foolish." ସେ ସ୍ପଷ୍ଟଭାବେ ଘୋଷଣା କରୁଛନ୍ତି ଯେ ଯଦି ମୂର୍ଖ ନ ହୁଏ ତେବେ ସେ ଭୋଟରେ ନିଶ୍ଚୟ ଜିତିବ । ଗୋୟେବଲସ୍ ଭଳି ଉପଯୁକ୍ତ ଶିକ୍ଷକଙ୍କ କଥା ମନେ ରଖି ନ ଥିଲେ ମଧ୍ୟ ଏ ଦେଶର ପୁଞ୍ଜିବାଦୀ ନେତାମାନେ ନିର୍ବାଚନରେ ଜିତିବାର କୌଶଳକୁ ଉତ୍ତମ ରୂପେ ଆୟତ୍ତ କରି ପାରିଛନ୍ତି । ଆମ ଦେଶର କଂଗ୍ରେସୀ ଭୋଟ ପଦ୍ଧତି, ନିୟମ ଓ ପ୍ରଚାର ଦେଖିଲେ ଗୋୟେବଲସର ଆଦର୍ଶ ଅକ୍ଷରେ ଅକ୍ଷରେ ପାଳିତ ହେଉଛି ବୋଲି କହିବାକୁ ହେବ । ଗୋଟିଏ କଥାରେ ଆଜି ସମାଜଜୀବନର ପ୍ରତ୍ୟେକ ସମସ୍ୟା ଓ ପ୍ରତ୍ୟେକ ସ୍ତର ସହ ପୁଞ୍ଜିବାଦୀ ଗୋଷ୍ଠୀର ବିରୁଦ୍ଧାତ୍ମକ ଦ୍ୱନ୍ଦ୍ୱର ଠିକ ସମାଧାନ କରି ନପାରି ଯେହେତୁ ସରକାର ନାନା ପ୍ରକାର ଜନସ୍ୱାର୍ଥ ବିରୋଧୀ ଆଇନ ଓ ଆଚରଣ ଭିତରେ ଦ୍ୱାରା ବିରୋଧୀ ଶକ୍ତିକୁ ଦମନ କରି ଏକଛତ୍ରବାଦ ପ୍ରତିଷ୍ଠାର ପଥକୁ ସୁଗମ କରୁଛନ୍ତି ।

ନେହେରୁ ସରକାରର ଶ୍ରେଣୀଚରିତ୍ର ଓ ଉଦ୍ଦେଶ୍ୟ ସମ୍ପର୍କରେ ଜନସାଧାରଣଙ୍କୁ ସଚେତନ କରିବା ଦୂରେ ଥାଉ ତଥାକଥିତ କାମ୍ୟୁନିଷ୍ଟ ଦଳଗୁଡ଼ିକ ଜନସାଧାରଣଙ୍କୁ ଶାନ୍ତିବାଦୀ(?) ନେହେରୁଙ୍କ ନିକଟରେ ନତମସ୍ତକ କରାଇବା ପାଇଁ ଯେପରି ଅକ୍ଳାନ୍ତ ଶ୍ରମ କଲେଣି ପଣ୍ଡିତ ନେହେରୁ ନହୋଇ ଦେଶରେ ଅନ୍ୟ କେହି ପ୍ରଧାନ ମନ୍ତ୍ରୀ ହୋଇଥିଲେ ଏମାନଙ୍କ ଅନ୍ତର ବେଦନା ବୁଝି ନିଶ୍ଚୟ ତରଳି ଯାଆନ୍ତେଣି । କିନ୍ତୁ ଦୁଃଖର ବିଷୟ ଯେ ପଣ୍ଡିତ ନେହେରୁଙ୍କ ହୃଦୟ ଓ ମନ ବିଲାତର ପାଣି ପବନରେ ଗଢ଼ା ! ଏ କଥା ବୁଝିବା ଦରକାର । ଧନୀକ ଶ୍ରେଣୀ-ପୁଷ୍ଟ ଆଜି କେତେକ ଦଳ ସାମ୍ରାଜ୍ୟବାଦୀ ଯୁଦ୍ଧ ଶିବିରରେ ସିଧାସଳଖ ଯୋଗ ଦେଇ ସମାଜବାଦୀ ଶିବିର ବିରୁଦ୍ଧରେ ଜେହାଦ ଘୋଷଣା କରିବା ପାଇଁ ନେହେରୁ ସରକାର ତଥା ଜନସାଧାରଣଙ୍କୁ ଉପଦେଶ ଦେଉଛନ୍ତି । ଏ ଦେଶର କେତେକ ଭଡ଼ାଟିଆ ବୁଦ୍ଧିଜୀବୀ ପିଠିରେ ଢୋଲ ପକାଇ ନିତାଇ-ଗୌର ଭଳି ନେହେରୁ ସରକାରର ଶାନ୍ତି ନିରପେକ୍ଷତା ଓ ଗଣତନ୍ତ୍ରର କୀର୍ତ୍ତନ କରି ବୁଲୁଛନ୍ତି ଏବଂ ଜନସାଧାରଣଙ୍କୁ ସେହି ଅଜ୍ଞାନ ଅନ୍ଧକାରର ଗହ୍ୱରକୁ ଠେଲି ନେଉଛନ୍ତି । ଆଖିବୁଜି ନିଆଁରେ ହାତ ଦେଲେ ରକ୍ଷା ମିଳିବ , ବୋଲି ଭାବିବା ଯେପରି ନିର୍ବୋଧତା, ସେହିପରି ଅତୀତ ଇତିହାସରୁ ଶିକ୍ଷା ସମ୍ମୁଖରେ ଆଉ କିଛି ନ ଦେଖିଲା ପରି ଯେଉଁମାନେ ତାର ପୁନରାବୃତ୍ତି କରିବାକୁ ଚେଷ୍ଟା କରନ୍ତି ତାର ପରିଣତି , ଯାହା ହୁଏ କହିବା ବାହୁଲ୍ୟ ।

ତଥାକଥିତ ଗଣତନ୍ତ୍ର, ଜାତୀୟ ସମାଜତନ୍ତ୍ରର ଭେକ ସବୁ ଇତିହାସରେ ଧରା ହୋଇଯାଇଛି ଜର୍ମାନୀରେ—ଶିଳ୍ପପତି **Stinnes, Krupps, Thyssen, Hugenberg** ଙ୍କ

ଅର୍ଥରେ ନାତ୍ସିମାନଙ୍କ ନେତୃତ୍ୱରେ। ବହୁ ଜର୍ମାନ ଶିକ୍ଷିତ ଯୁବକ ଶିଳ୍ପପତିମାନଙ୍କର ଏହି ଭୋଗବିଳାସରେ ଭୁଲିଛନ୍ତି । କିନ୍ତୁ ଆଜି ସେ ନାତ୍ସି ଶାସନ, ଜାତୀୟ ସମାଜତନ୍ତ୍ର(National Socialism) ଗଲା କୁଆଡ଼େ ? ଏ ପ୍ରଶ୍ନ ପଚାରିଲେ ନେତାମାନଙ୍କୁ ଅପମାନ ହୋଇପାରେ । ରକ୍ତ ଚକ୍ଷୁର ଦୃଷ୍ଟି ମଧ୍ୟ ପଡ଼ି ପାରେ । କିନ୍ତୁ ଆଉ ଥରେ ଇତିହାସର ପୁନରାବୃତ୍ତି କରି ଟାଟା, ବିରଲା, ଡାଲମିଆଙ୍କ ଅର୍ଥରେ ଗଣତନ୍ତ୍ର ସମାଜତନ୍ତ୍ରର ଭୋଗବିଳାସ, ଭୋଜପର୍ବ କରିବା ପାଇଁ ଏ ଦେଶର ଦରିଦ୍ର ଜନସାଧାରଣ ଆଦୌ କାମନା କରନ୍ତି ନାହିଁ, ଆଉଥରେ ଫାସିବାଦ କବଳରେ ପଡ଼ି ଜଳପୋଡ଼ି ଛାରଖାର ହେବାକୁ ଚାହାନ୍ତି ନାହିଁ ।

ଅତୀତ ଇତିହାସର ଶିକ୍ଷା ବିଶ୍ୱବ୍ୟାପୀ ଶ୍ରମିକ ଆନ୍ଦୋଳନର ଅଭିଜ୍ଞତାକୁ ଆଖି ଆଗରେ ରଖି ଦେଶର ଜନସାଧାରଣଙ୍କୁ ନିଜର ମୁକ୍ତିର ପଥ ବାଛି ନେବାକୁ ହେବ । ସେ ପଥ ହେଉଛି ଏକମାତ୍ର ବିପ୍ଳବର ପଥ । ସମାଜ ବିଜ୍ଞାନର ଶାଣିତ ଯୁକ୍ତି ଓ ଜ୍ଞାନ ଦ୍ୱାରା ବୁର୍ଜୁଆ ପାର୍ଲିଆମେଣ୍ଟାରୀ ଚିନ୍ତାର ପ୍ରଭାବ ଓ ଆଦର୍ଶକୁ ଗୋଟି ଗୋଟି କାଟି ବିପ୍ଳବର ପଥକୁ କଣ୍ଟକମୁକ୍ତ କରିବାକୁ ହେବ, ଏବଂ ଭାରତୀୟ ଶିଶୁ ଫାସିବାଦ ଯୌବନରେ ପଦାର୍ପଣ କରିବା ପୂର୍ବରୁ ତାର ଧ୍ୱଂସ ସାଧନ କରିବାକୁ ହେବ । ଆଜି ଦେଶର ଜନସାଧାରଣଙ୍କ ନିକଟରେ ଆହ୍ୱାନ ହେଉଛି ବିପ୍ଳବୀ ଦଳ ଗଠନ । ବିପ୍ଳବ ମାଧ୍ୟମରେ ପୁଞ୍ଜିବାଦୀ ରାଷ୍ଟ୍ରର ଉଚ୍ଛେଦ ସାଧନ ଏବଂ ସମାଜତନ୍ତ୍ର ପ୍ରତିଷ୍ଠା ।

---

ଟାଉନ ପ୍ରେସ, କଟକ

ଭାରତର ସୋସ୍ୟାଲିଷ୍ଟ ଇଉନିଟି ସେଣ୍ଟର (ଓଡ଼ିଶା ରାଜ୍ୟ କମିଟି) ପକ୍ଷରୁ କମ୍ରେଡ଼ କରୁଣାକର ଦାସ କର୍ତ୍ତୃକ, ଦୋଳମୁଣ୍ଡାଇ, କଟକ-୨ ରୁ ପ୍ରକାଶିତ ଏବଂ ଟାଉନ ପ୍ରେସ, କଟକ-୨ ରେ ମୁଦ୍ରିତ ।